ଶ୍ରୀ ଶ୍ରୀଧର ସ୍ୱାମୀଙ୍କ

ଭାବନା

ବା

# ଶ୍ରୀ ନୃସିଂହ ସ୍ତୁତି

ସାନ୍ୱୟ ପଦ୍ୟାନୁବାଦକ

ଗାୟକ ପ୍ରବର **ପରମେଶ୍ୱର ସାହୁ**

ଓରଫ **ନାଗାର୍ଜ୍ଜୁନ ସାହୁ**

ସା/ପୋ- କୋହ୍ଲ

ଭାୟା- ଛିବ୍ରଡ଼, ଜି- ବାଲେଶ୍ୱର

# ଉତ୍ସର୍ଗ ପତ୍ର

ମାନ୍ୟବର,

ଶ୍ରୀ ଶ୍ରୀ ଶ୍ରୀ ଢେଙ୍କାନାଳାଧିଶ ପାର୍ଲିୟାମେଣ୍ଟ ମେମ୍ବର
ଶ୍ରୀ ଶ୍ରୀ ଶ୍ରୀ କାମାକ୍ଷା ପ୍ରସାଦ ସିଂହଦେଓ
ମହାମାହ୍ୟ କରକମଳେଷୁ

ଶ୍ରୀମନ୍ ମହାରାଜ୍,

ଚହ୍ନିଲେ ଆପଣ ଦୀର୍ଘାୟୁ ଓ ଯଶସ୍ୱୀ ହୁଅନ୍ତୁ । ମୁଁ ଜଣେ ଅକ୍ଷମ କଳାକାର ଓ ଲେଖକ । ଉକ୍ତ କ୍ଷୁଦ୍ର ପୁସ୍ତିକାରେ ସ୍ୱାମୀ ଶ୍ରୀଧରଙ୍କର ସାଧନା ବା ନୃସିଂହ ସ୍ତୁତି ଓ ତାଙ୍କର କୃତିରେ ଆପଣଙ୍କ ବଂଶ ଓ କପିଳାସ କ୍ଷେତ୍ରର ବହୁଳ ଭୂମିକା ଥିବାରୁ ଉକ୍ତ କ୍ଷୁଦ୍ର ପୁସ୍ତିକାରେ ମୋର ଯେଉଁ ପରିଶ୍ରମ ଅଛି ତାହାର ଉପଯୁକ୍ତ ପ୍ରିୟ ଅନୁରାଗୀ ଦାନ-ଇଶ୍ୱର ଗୁଣ ମଣ୍ଡିତ କ୍ଷତ୍ରୀୟ ସର୍ବ ପ୍ରଥମ ଆପଣ ଅଟନ୍ତି । ତେଣୁ ହୀନ ଲେଖକ ଉକ୍ତ ପୁସ୍ତିକାକୁ ପୂର୍ବତନ ମନ୍ତ୍ରୀ ଶ୍ରୀମାନ୍ ଜଗନ୍ନାଥ ରାଉତ ଓ ଶ୍ରୀଯୁକ୍ତ ଯଦୁନାଥ ଦାଶ ମହାପାତ୍ରଙ୍କ ସାହାଯ୍ୟ ସହାନୁଭୂତିରେ ମୁଦ୍ରଣ କରି ଆପଣଙ୍କ ନାମରେ ଉତ୍ସର୍ଗ କଲି ।

॥ ଇତି ॥

ଆପଣଙ୍କର
ଚିର ଶୁଭକାଂକ୍ଷୀ
ହୀନମତି ଲେଖକ
ତା ୮. ୭. ୯୨

# କେତୋଟି କଥା

ଶ୍ରୀ ପରମେଶ୍ୱର ସାହୁ ଯୌବନରେ ଏବଂ ପୌଢ଼ାବସ୍ଥାର ପ୍ରଥମାଂଶରେ ଥିଲେ ଜଣେ ବିଶିଷ୍ଟ ପାଲାଗାୟକ । ପ୍ରଧାନତଃ ପାଲାଗାୟକ ରୂପରେହିଁ ତାଙ୍କର ପରିଚୟ ଓ ପ୍ରତିଷ୍ଠା । ପାଲାଗାୟକମାନେ କେବଳ ପ୍ରାଚୀନ କାବ୍ୟ ସମୂହର ରସ ମାଧୁରୀ ପରିବେଷଣ କରନ୍ତି ନାହିଁ । ସେମାନେ ଅନେକ ସମୟରେ ଶ୍ରୋତା ମାନଙ୍କର ନାନା ପ୍ରଶ୍ନର ସମାଧାନ କରନ୍ତି ଓ ନାନା ସନ୍ଦେହ ମୋଚନ କରନ୍ତି । ସେଥିଲାଗି ସେମାନଙ୍କୁ ନାନା ପୌରାଣିକ ଉପାଖ୍ୟାନ କିମ୍ବଦନ୍ତୀ ଜନଶ୍ରୁତି ଢଗ ଢମାଳି ଇତ୍ୟାଦି ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଇତିହାସ ଭୂଗୋଳ ସମାଜ ନୀତି ସମ୍ବନ୍ଧୀୟ କିଛି କିଛି କଥା ମଧ୍ୟ ଜାଣିବାକୁ ପଡ଼େ । ସେଇ ସୂତ୍ରରେ ଶ୍ରୀ ସାହୁ ଅନେକ କଥା ଜାଣିଛନ୍ତି, ଅନେକ ତଥ୍ୟ ସଂଗ୍ରହ କରିଛନ୍ତି । ତାଙ୍କର କୌତୁହଳ ଅତ୍ୟଧିକ ତାଙ୍କର ଜିଜ୍ଞାସା ପ୍ରବଳ । କେବଳ ଯେ ଜନଶ୍ରୁତି ପ୍ରଚଳିତ ରୀତି ନୀତି ଲୋକାଚାର ଇତ୍ୟାଦି ବିଷୟରେ ସଂଗ୍ରହ କରି ସେ ସନ୍ତୁଷ୍ଟ ହେଲେ ତା ନୁହେଁ ସେ ସବୁତଥ୍ୟ ପଛରେ କି ରହସ୍ୟ ଥାଇ ପାରେ କେଉଁ ସୂତ୍ର ଓ ଉତ୍ସରୁ ଏବଂ କେଉଁ ପନ୍ଥାରେ ସେଇ ରୀତିନୀତି ଧୀରେ ଧୀରେ ଗଢ଼ି ଉଠିଛି ତାକୁ ଜାଣିବାକୁ ମଧ୍ୟ ସେ ଆଗ୍ରହୀ ହେଲେ । ତା ସାଙ୍ଗକୁ ତାଙ୍କର ଥିଲା ଲେଖନୀ ସୃଜନାର ଶକ୍ତି ଓ କଳା । ତେଣୁ ଧୀରେ ଧୀରେ ସେ ସାହିତ୍ୟ ସୃଷ୍ଟି କଲେ ଓ ଏଇପରି ଭାବରେ ଆଜ ବୃଦ୍ଧାବସ୍ଥାରେ ସେ ଜଣେ ଲେଖକ ।

ଶ୍ରୀ ସାହୁଙ୍କର ଭାବନାର ଠାଣିର ଗୋଟାଏ ବୈଶିଷ୍ଟ୍ୟ ଅଛି । ତାଙ୍କ ରଚନାରେ ପ୍ରଚଳିତ ପ୍ରବନ୍ଧର ଆବେଷ୍ଟନୀ ଥିଲେ ମଧ୍ୟ ସେଥିରେ ଗଳ୍ପ କଥନର ପ୍ରକୃତି ଦେଖିବାକୁ ମିଳେ । ବିଷୟ ସମ୍ପୃକ୍ତ ପ୍ରବନ୍ଧର ସୁସମ୍ବନ୍ଧ ଯୁକ୍ତିରେ ସଜ୍ଜିତ ହୋଇ କଥା କହିବାର ଗତିରେ ବିକ୍ଷିପ୍ତ ହୋଇପଡ଼େ । ତେଣୁ ପ୍ରବନ୍ଧର କଠିନତା ପରିହାର କରି ତାହା ଏକ ସାବଲୀଳତା ଓ ପ୍ରବହମାନତା ଲାଭକରେ । ଏହା ଗୁରୁ ଗମ୍ଭୀର ପ୍ରବନ୍ଧ ନ ହୋଇ ହୁଏ ମଜଲିସ୍ ରଚନା ।

ଶ୍ରୀ ସାହୁଙ୍କର ପୂର୍ବ ରଚିତ ବିରଞ୍ଚି ନାରାୟଣ ସମ୍ବନ୍ଧୀୟ ପୁସ୍ତିକାରୁ ତାଙ୍କର ତଥ୍ୟ ସଂଗ୍ରହର ପ୍ରଗାଢ଼ ଚେଷ୍ଟା ଓ ବିପୁଳ କୌତୁହଳର ପରିଚୟ ମିଳେ । ଅତୀତକୁ ଜାଣିବାଲାଗି ସେ ଅତ୍ୟନ୍ତ ଆଗ୍ରହୀ । ତାଙ୍କର ଭଦ୍ରକ ଓ ଭଦ୍ରକାଳୀଙ୍କ କଥାରେ ମଧ୍ୟ ରହିଛି ସେଇ ଚେଷ୍ଟା ଓ ଆଗ୍ରହର ପରିଚୟ । ନାନାସ୍ଥାନ ନାନାଅନୁଷ୍ଠାନ ଓ ସଂଗଠନ ତଥା ଆଞ୍ଚଳିକ ପରମ୍ପରା ଓ ଐତିହ୍ୟ ସମ୍ବନ୍ଧରେ ଅତିଧୈର୍ଯ୍ୟ ଓ ଔତ୍ସୁକ୍ୟ ସହକାରେ ସେ ଅନେକ କଥା ସଂଗ୍ରହ କରି ସେଗୁଡ଼ିକ ବିଷୟରେ ଚିତ୍ତାକର୍ଷକ ଓ ଉପାଦେୟ ବିବରଣୀ ଉପସ୍ଥାପନ କରିଛନ୍ତି । ସବୁବିଷୟ ଓ ସବୁବିଭୂତିରେ ଐତିହାସିକ ସତ୍ୟ ନଥାଇ ପାରେ । ତେବେ ଏହାଯେ ପାଠକର ମନରେ ଅନୁସନ୍ଧିତ୍ସା ଜାଗ୍ରତ କରିବ ସେଥିରେ କୌଣସି ସନ୍ଦେହ ନାହିଁ ।

ଶ୍ରୀ ସାହୁ ମଧ୍ୟ ଧର୍ମ ଶାସ୍ତ୍ରର ନାନା ତତ୍ତ୍ୱ ଜାଣିବାକୁ ଉତ୍ସୁକ । ସେଇ ଔତ୍ସୁକ୍ୟ ଯୋଗୁ ସେ ଶଙ୍କର ବିରଚିତ ଆନନ୍ଦଲହରୀ ଅନୁବାଦ କରିଛନ୍ତି । ଏବେ ଶ୍ରୀଧର ସ୍ୱାମୀ ବିରଚିତ ଶ୍ରୀ ନୃସିଂହ ସ୍ତୁତିର ଅନୁବାଦ ମଧ୍ୟ କରିଛନ୍ତି । ଇତି ।

ସ୍ୱାଃ ଶ୍ରୀ ସୁଧାଂଶୁ ଶେଖର ରାୟ
ଅବସର ପ୍ରାପ୍ତ ଅଧ୍ୟକ୍ଷ, ଚରମ୍ପା ମହାବିଦ୍ୟାଳୟ
ତା ୨୪ । ୮ । ୧୯୯୧

# ଅଭିମତ

ଶ୍ରୀ ପରମେଶ୍ୱର ସାହୁ ବିରଚିତ 'ଶ୍ରୀଧର ସ୍ୱାମୀଙ୍କ ଭାବନା' ବା 'ଶ୍ରୀ ନୃସିଂହ ସ୍ତୁତି' ପୁସ୍ତକର ପାଣ୍ଡୁଲିପି ଆମୂଳଚୂଳ ପଢ଼ିଲି । ଜଣାପଡ଼ିଲା ଏହା ଯେମିତି ଏକ ସିଦ୍ଧହସ୍ତ ଗବେଷକଙ୍କର ଗବେଷଣା ପ୍ରସୂତ ସୁମିଷ୍ଟ ନାରିକେଳ ଫଳ । ଏହାର ଆବରଣରେ କାଠିନତା ସତ୍ତ୍ୱେ ଏହାର ଅଭ୍ୟନ୍ତର ଖୁବ୍ ରସୋତ୍ତୀର୍ଣ୍ଣ । ଶ୍ରୀ ସାହୁ ଜଣେ ସାଧନାରତ ପାଲାଗାୟକ ଏବଂ ସୁପଣ୍ଡିତ । ତାଙ୍କର ଏହି କୃତି ସାଧାରଣ ପାଠକଙ୍କର ଦ୍ୱାରା ନିଶ୍ଚୟ ଆଦୃତ ହେବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

॥ ଇତି ॥

ଯଦୁନାଥ ଦାଶ ମହାପାତ୍ର
ପୂର୍ବତନ ମନ୍ତ୍ରୀ
ତା ୨୫ । ୯ । ୯୨

# କଥାରମ୍ଭ

ଶ୍ରୀଧର ଜନ୍ମି ଥିଲେ ଏହି ଉତ୍କଳେ ବ୍ୟାସକବି ଫକୀର ମୋହନ-ଙ୍କର ଏହି ପଦ୍ୟଟି ମାନସ ପଟରେ ପ୍ରଥମେ ରେଖା ଆଣେ ।

ସଂସ୍କୃତଜ୍ଞ ସମାଜରେ ଶ୍ରୀଧରଂ ସକଳଂ ବେତ୍ତି ଶ୍ରୀ ନୃସିଂହ ପ୍ରସାଦତଃ ଶୁଣିବାକୁ ମିଳେ । ବଶିଷ୍ଟ ଶିକ୍ଷାବିଦ୍ ୬ ଚନ୍ଦ୍ରମୋହନ ମହାରଣାଙ୍କ ପ୍ରମାଣ ଅନୁସାରେ ଶ୍ରୀଧର ବାଲେଶ୍ୱର ଜିଲ୍ଲା ରେମୁଣା (କ୍ଷୀରଚୋରା ଗୋପୀନାଥ) ନିକଟବର୍ତ୍ତୀ ମରେଇ ଗାଁରେ ଜନ୍ମ ଗ୍ରହଣ କରି-ଥିଲେ । ସେ ବ୍ରାହ୍ମଣ କୁଳୋଦ୍ଭବ ଥିଲେ ଏବଂ ସନ୍ୟାସ ହୋଇଥିଲେ ।

ଶ୍ରୀଜଗନ୍ନାଥ ଦାସଙ୍କର ସର୍ବ ପରିଚିତ ସର୍ବଶ୍ରେଷ୍ଠକୃତ ଶ୍ରୀମଦ୍ ଭାଗବତରେ ଅଷ୍ଟାଦଶ ପୁରାଣେ ସାର ଶ୍ରୀଭାଗବତ ନାମ ଯାର ପଙ୍‌କ୍ତି ଦେଖାଯାଏ ଶ୍ରୀଧର ସ୍ୱାମୀଙ୍କ ସଂସ୍କୃତ ଭାଗବତ ଗ୍ରନ୍ଥର ସୁବୋଧିନୀ ଟୀକା ପ୍ରଧାନ ଅବଲମ୍ୱନରେ ଶ୍ରୀ ଜଗନ୍ନାଥ ଦାସେ ନବାକ୍ଷରୀ ବୃତ୍ତରେ ଓଡ଼ିଆ ଭାଗବତ ରଚନା କରିଥିଲେ । ସର୍ବ ଲୋକ ପ୍ରିୟ ୧୧ ସ୍କନ୍ଧରେ ପ୍ରଥମ ବନ୍ଦନା —ନମଇଁ ନୃସିଂହ ଚରଣ, ଅନାଦି ପରମ କାରଣ ସର୍ବବନ୍ଦିତ ।

ଜନଶ୍ରୁତିବାଦ ଶ୍ରୀ ଜଗନ୍ନାଥ ଦାସେ ଶ୍ରୀ ମନ୍ଦିର ବେଢା କଳ୍ପବଟ ମୂଳରେ ଥିବା ଗଣେଶଙ୍କ ପାଖରେ ବସି ପବିତ୍ର ଭାଗବତ ପୁରାଣକୁ ନବାକ୍ଷରୀ ପଦ୍ୟରେ ଅନୁବାଦ କରିଥିଲେ ।

ସ୍ୱାମୀ ଶ୍ରୀଧର ଯାହାଙ୍କୁ ୨ୟ ଶୁକଦେବ ବୋଲଯାଏ । ସେ କେଉଁ ନୃସିଂହ ଦେବଙ୍କ ସ୍ତମ୍ଭରେ ତାଙ୍କର ଏ ପବିତ୍ର ସାଧନା ଆରମ୍ଭ କରିଥିଲେ ଏହା ବିବାଦାସ୍ପଦ ପ୍ରଶ୍ନ । ଶ୍ରୀମନ୍ଦିର ପଶ୍ଚିମ ପାଖରେ ନୃସିଂହ ବିଗ୍ରହ, ଢେଙ୍କାନାଳରେ କପିଳାସ କନ୍ଦରସ୍ଥିତ ନୃସିଂହ ଏବଂ ଆନ୍ଧ୍ର ରାଜ୍ୟ ଅନ୍ତର୍ଗତ ସିଂହାଚଳମ୍‌ଠାରେ ଶ୍ରୀ ନୃସିଂହନାଥ ଆହୁରି ସମ୍ବଲପୁରରେ ବଡ଼ଲ ନୃସିଂହ କେଉଁ ସ୍ଥାନ ଶ୍ରୀଧରଙ୍କର ସାଧନା ପୀଠ ?

ଯଦି ଶ୍ରୀଧର ପୁରୀ ମନ୍ଦିର ମଧ୍ୟରେ ତାଙ୍କର ପବିତ୍ର ଶ୍ରୀମଦ୍ ଭାଗବତ ଟୀକା ଆରମ୍ଭ କରିଥାନ୍ତେ ତେବେ ପ୍ରଥମେ ନିଶ୍ଚୟ ଶ୍ରୀ ଜଗନ୍ନାଥ ଦେବଙ୍କର ବନ୍ଦନା ଲେଖିଥାନ୍ତେ ।

ପଞ୍ଚସଖା ଯୁଗ ବା ପ୍ରତାପରୁଦ୍ର ଗଜପତିଙ୍କ ରାଜୁତିରେ ଚୈତନ୍ୟଙ୍କ ଉତ୍କଳ ଆଗମନ ଓ ସ୍ଥିତି । ସେ କାଳରେ ପ୍ରସିଦ୍ଧ ପଞ୍ଚସଖାଙ୍କ ଆନୁ-କୂଲ୍ୟରେ ଶ୍ରୀମଦ୍ ଭାଗବତ ପୁରାଣ ବାଲ୍ମୀକି ରାମାୟଣ ଓ ହରିବଂଶ ପ୍ରଭୃତିର ପ୍ରାଦେଶିକ ଭାଷାରେ ସଂସ୍କୃତରୁ ରୂପାନ୍ତର ହୁଏ । ତେବେ ଶ୍ରୀଧର ନିଶ୍ଚୟ ଚତୁର୍ଦ୍ଦଶ କିମ୍ବା ତ୍ରୟୋଦଶ ଖ୍ରୀଷ୍ଟୀୟ ଶତାବ୍ଦୀ ପୂର୍ବକାଳ ଲୋକ । କେତେକ ସମାଲୋଚକ କହନ୍ତି ୧୩ ଶତ ଖ୍ରୀଷ୍ଟାବ୍ଦ ମଧ୍ୟରେ ଶ୍ରୀମଦ୍ ଭାଗବତ ରଚିତ । ଭାଗବତରେ ଅଛି ଅଷ୍ଟାଦଶ ପୁରାଣେ ସାର— ଶ୍ରୀ ଭାଗବତ ନାମ ଯାର ଭାଗବତ ୧୮ ପୁରାଣର ଶେଷପୁରାଣ, ଭାଗବତ ପରେ ଆଉ ପୁରାଣ ଲେଖା ହୋଇନ ।

ସେମାନେ କହନ୍ତି ପ୍ରବଳ ପ୍ରତାପୀ ଗଙ୍ଗବଂଶ ସମ୍ରାଟ୍ ନରସିଂହ ଦେବଙ୍କ ରାଜତ୍ୱ ପରେ ଉତ୍କଳର କୌଣସି ଆଦର୍ଶ ସ୍ଥାପତ୍ୟର ଚିହ୍ନ ନାହିଁ । କୋଣାର୍କଠାରୁ ସବୁଶେଷ—ବିବୁଧମାନଙ୍କ କୃତ୍ତି ଯେପରି ସନ୍ଧି ବିଗ୍ରହ ବିଶ୍ୱନାଥ କବିରାଜଙ୍କର ପ୍ରସିଦ୍ଧ ଅଳଙ୍କାର ଶାସ୍ତ୍ର ସେହି ନରସିଂହଙ୍କ ରାଜୁତିରେ । ତେବେ ଶ୍ରୀଧର ସେ କାଳ ନା ତା ପୂର୍ବକାଳ ଏହି ବିଷୟର ଯତ୍ କିଞ୍ଚିତ ତଥ୍ୟ ପ୍ରଦର୍ଶନ ଏ ପ୍ରବନ୍ଧର ମୁଖ୍ୟ ବିଷୟ ।

ସ୍ୱୟଂ ଶୁକଦେବ ଶ୍ରୀ ଶ୍ରୀଧର ସ୍ୱାମୀଙ୍କ ସାଧନା ପ୍ରତିଭା କୃତିକୁ ବର୍ଣ୍ଣନ କରିବା ଆକାଶକୁ ହାତରେ ମାପିବା ସଙ୍ଗେ ସମାନ ।

ଶ୍ରୀଧରଙ୍କ ସୁବୋଧିନୀ ଟୀକା ସମ୍ବଳିତ ଶ୍ରୀ ଭାଗବତ ସଂସ୍କୃତ ଶ୍ଳୋକ ବେଦବ୍ୟାସ ବିରଚିତ ଉତ୍କଳ ଭାଷାରେ ମୁଦ୍ରିତ ଏଯାଏ ମୁଁ ଦେଖିନି । ଓଡ଼ିଶା ସଂସ୍କୃତି ବିଭାଗ କହିଲେ ଆମେ ମୁଦ୍ରଣ କରୁଛୁ ସମ୍ପୂର୍ଣ୍ଣ ହେଲେ ପାଇବ । ଗୀତା ପ୍ରେସ୍ ହିନ୍ଦୀ ଭାଷା ଅନୁବାଦ କରିଛନ୍ତି । ଜଗନ୍ନାଥଙ୍କ ଦୟାରୁ ନିଜ ରକ୍ଷିତ ବଙ୍ଗଳା ଭାଷାରେ ମୁଦ୍ରିତ ପ୍ରାୟ ୧୫୦ ବର୍ଷ ପୁରୁଣା କିଛିଟି ସମ୍ବଳ କିନ୍ତୁ ଟୀକାରେ ତାଙ୍କ ଜୀବନୀର କିଛି ଉଲ୍ଲେଖ ନାହିଁ । ସେ ସନ୍ୟାସୀ ସାଧକ ଯୋଗୀ ପରିବ୍ରାଜକ ଭକ୍ତ ଚୂଡ଼ାମଣି । ଚନ୍ଦ୍ରମୋହନ ମହାରଣାଙ୍କ ପ୍ରଥମ ଅନୁସନ୍ଧାନ ପ୍ରଧାନ ପାଥେୟ ।

ଶ୍ରୀଧରଙ୍କ ବାଲ୍ୟ ବିଦ୍ୟାଶିକ୍ଷା ସମ୍ବନ୍ଧେ କୌଣସି ପୁସ୍ତକ ଏଯାଏ ମୁଁ ଦେଖିନାହିଁ । ସନ୍ଥ ତୁଳସୀଦାସଙ୍କର ଶ୍ରୀରାମ ଚରିତ ମାନସରେ ଯେପରି ଗ୍ରନ୍ଥାରମ୍ଭର ସନ ମାସବାର ଦେଖାଯାଏ ଭାଗବତରେ ସେପରି ନାହିଁ ।

ସେ ବିଷ୍ଣୁ ଉପାସକ ବୈଷ୍ଣବ ନ ହୋଇଥିଲେ ଶ୍ରୀ ଭାଗବତ୍ ଶ୍ରୀମଦ୍ ଭାଗବତ୍ ଗୀତା ଓ ଶ୍ରୀ ବିଷ୍ଣୁ ପୁରାଣାଦିର ସଂସ୍କୃତ ଶ୍ଳୋକମାନଙ୍କୁ ଟୀକା କାହିଁକି କରିଥାନ୍ତେ ? ଭକ୍ତ ଓ ସାଧକ ନ ହେଲେ ଏପରି ଦୁରୂହ କାର୍ଯ୍ୟ ଅନ୍ୟମାନଙ୍କ ଦ୍ୱାରା ସମ୍ଭବ କି ?

ଯେଉଁ ଟୀକାର ପଦ୍ୟାନୁବାଦ ଏ ପର୍ଯ୍ୟନ୍ତ ଉତ୍କଳ ଭାରତୀଙ୍କର ମଣିମୟ କଣ୍ଠ ଭୂଷଣ ଏବଂ ସେହି ଭାଷା ତତ୍ ପରବର୍ତ୍ତୀ କବିକୁଳଙ୍କର ଏ ପର୍ଯ୍ୟନ୍ତ ପ୍ରଧାନ ଅବଲମ୍ବନ । ଦୁରୂହ ଭକ୍ତି ଆଧ୍ୟାତ୍ମିକ ପ୍ରଧାନ ଶ୍ଳୋକ ସମୂହର ଟୀକା ନ ହେବା ପର୍ଯ୍ୟନ୍ତ କଠିନ ସଂସ୍କୃତ ଅଜ୍ଞାତ ସାଧାରଣ ଜନ ସମାଜରେ ଉପେକ୍ଷିତ ଥିଲା ସେ କାଳରେ ।

ମୁକ୍ତିମେୟ ପଣ୍ଡିତ ମଣ୍ଡଳୀରେ ସୁବିଦିତ ଥିଲା । ଏହି ସନ୍ଦେହ ଦୂର ଏବଂ କିଛି ତଥ୍ୟ ପାଇବା ପାଇଁ ଗତ ୧୯୮୮ ମସିହାରେ ଉତ୍କଳ

ପଣ୍ଡିତ ସମ୍ମିଳନୀ ପୁରୀ ଅଧିବେଶନକୁ ଯାଇଥିଲି । ଭାରତ ସେବାଶ୍ରମରେ ଏହା ହେଉଥିଲା । ପ୍ରଥମେ ଶ୍ରୀ ଜଗନ୍ନାଥ ଦର୍ଶନ ସାରି ମୁକ୍ତିମଣ୍ଡପ ପଣ୍ଡିତ ମଣ୍ଡଳୀଙ୍କୁ ଭେଟିଲି । ଦୀର୍ଘକାୟ ମୁଣ୍ଡିତଶିର କେନ୍ଥ ବା ଓଉଫୁଲ ଉପମ କେଶ ଭୂଷିତ ମୌନୀ ଦ୍ୱିଜମାନଙ୍କୁ ପ୍ରଣତି ଜଣାଇ ଅଭିପ୍ରାୟ ନିବେଦନ କଲିରୁ ଉତ୍ତର ଦେଲେ ବାପା ଏ ବିଷୟ କବି ଲେଖକମାନଙ୍କୁ ପଚାର ତଥ୍ୟ ପାଇବ । ଶ୍ରୀଧର ଦ୍ୱିତୀୟ ଶୁକଦେବ ଆମେ ଏତିକି ଜାଣୁ ଅଧିକ ଜାଣୁନା ଆଶିଷ ଦେଲେ ନିଶ୍ଚୟ ପାଇବ ।

ସମ୍ମିଳନୀକୁ ସବୁ ଜିଲ୍ଲାରୁ ବହୁପଣ୍ଡିତ ସମାଗମ ହୋଇଥିଲା । ନିଜ ସୁବିଧା ଅଧିକ ଅର୍ଥ ଅଧିକାରପାଇଁ ସମସ୍ତେ ବ୍ୟସ୍ତ । ଦିନେ ଛୋଟିଆ ସଂସ୍କୃତ କବି ସମ୍ମିଳନୀ ହେଲା । ମୁଖ୍ୟମନ୍ତ୍ରୀ ଶିକ୍ଷା ସଂସ୍କୃତି ମନ୍ତ୍ରୀ ପୁରୀ ବିଶ୍ୱବିଦ୍ୟାଳୟ କୁଳପତିପ୍ରମୁଖ ବିଦ୍ୟମାନ ଥିଲେ । ମୋ ଖୋଜୁଥିବା ଔଷଧ କାହାଠାରୁ ମିଳିବ ଓ ମୋ ମାନସ ବ୍ୟାଧି ଦୂର ହେବ ?

ପୁରୀ ସାମନ୍ତ କଲେଜ ଅଧ୍ୟାପକମାନେ ନିମନ୍ତ୍ରିତ ଓ ଦର୍ଶକ ଭାବରେ ଆସିଥିଲେ ।

ଜଣେ ଅଧ୍ୟାପକଙ୍କ ସଙ୍ଗେ ଆଲୋଚନା ଆରମ୍ଭ ହେଲା । ପ୍ରଥମେ ନବଧା ଭକ୍ତି ଉପରେ ଶ୍ରୀମଦ୍ ଭାଗବତରେ ପ୍ରହ୍ଲାଦ ଉପାଖ୍ୟାନରେ ।

ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋ ସ୍ମରଣଂ ପାଦସେବନମ୍
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମ ନିବେଦନମ୍ ।

ଶ୍ରୀକୃଷ୍ଣ ଦାସଙ୍କ ଚୈତନ୍ୟ ଚରିତାମୃତରେ ୯ ଭକ୍ତଙ୍କର ଉପମା ଅଛି । ଯଥା ପ୍ରହ୍ଲାଦ ସ୍ମରଣେ ସ୍ମରଣ ଭକ୍ତିରେ ପ୍ରହ୍ଲାଦ ପ୍ରସିଦ୍ଧ, ତାହାଙ୍କୁ ଭକ୍ତ ଶିରୋମଣି କୁହାଯାଏ । ଶ୍ରୀମଦ୍ ଭଗବତ ଗୀତା ବିଭୂତି ଯୋଗରେ ପ୍ରହ୍ଲାଦ ଦୈତ୍ୟାନାମସ୍ମି ନ୍ ଦେଖାଯାଏ । ଭାଗବତରେ ଭଗବାନଙ୍କର ୨୬ ଅବତାର ବର୍ଣ୍ଣନ ଦେଖାଯାଏ । ଲଳିର ଉଜ୍ଜଳୀତ୍ମ କବି ଓ ଭକ୍ତ

ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦରେ ଯେଉଁ ୧୦ ଅବତାର ବର୍ଣ୍ଣନ ପ୍ରଥମେ ଅଛି ନୃସିଂହ ୪ର୍ଥ ଅବତାର ଅଟନ୍ତି ।

ଜଣେ ଅଧ୍ୟାପକ (ଦର୍ଶନ ବିଭାଗ) କହିଲେ ଦଶ ଅବତାର ମାତ ଗର୍ଭ ନ୍ୟାୟ ।

ଇତିହାସବିଦ୍ କହିଲେ ସବୁ ଅବତାର କ୍ରମବର୍ଦ୍ଧମାନ ଜୀବ ଜଗତରେ ଆଲେଖ୍ୟ, ମାତ୍ର ନୃସିଂହ ମତରେ ଶୁଷ୍କ ସ୍ତମ୍ଭ ମଧ୍ୟରୁ ଆବିର୍ଭାବ ମାୟାବାଦର କଳ୍ପନା । ତାହାର ଐତିହାସିକ ସତ୍ୟ ଏହିପରି ଦୈତ୍ୟ ବା ଦ୍ରାବିଡ଼ପତି ହିରଣ୍ୟ କଶ୍ୟପଙ୍କର ସାନ ଭାଇଙ୍କୁ ଦେବଗଣମାନେ ମାରି ଦେଇଥିଲେ । ସେବେଳେ ଦୈତ୍ୟ ବା ଦ୍ରାବିଡ଼ ବା ଦାକ୍ଷିଣାତ୍ୟରେ ଥିବା ଜନ୍ମିତ ଅଧିବାସୀ ଓ ଦେବଗଣ ବା ଉତ୍ତର ଭାରତ ଆର୍ଯ୍ୟମାନଙ୍କ ମଧ୍ୟରେ ରାଜ୍ୟ ପାଇଁ ପ୍ରଭୁତ୍ୱ ପାଇଁ ତୀବ୍ର ପ୍ରତିଯୋଗିତା ଥିଲା ସବୁବେଳେ । ଯୁଦ୍ଧ ବିଗ୍ରହାଦି ହେଉଥିଲା । ଦ୍ରାବିଡ଼ପତି ହିରଣ୍ୟଙ୍କର ଆତ୍ମରକ୍ଷା ପାଇଁ ପୋଷା ସିଂହ ଥିଲା । ସେ ହିରଣ୍ୟ କଶ୍ୟପ ତାଙ୍କ ରାଜ୍ୟରେ ସୁ ଶାସକ ଥିଲେ । ସାନ ଭାଇଙ୍କ ମୃତ୍ୟୁ ପରେ ଏକଛତ୍ର ଏକାଧିପତ୍ୟ ଯୋଗୁ ଅସୀମ କ୍ଷମତା ଓ ଭୋଗର ଅଧିକାରୀ ଥିଲେ । ଉଚ୍ଚନୀଚ ଭେଦବର୍ଜିତ ସାମ୍ୟ ଭାବର ପ୍ରବର୍ତ୍ତକ ହୋଇଥିବାରୁ ଭୀଷଣ ଅହଂକାରୀ ଏବଂ ସର୍ବଦା ଭୋଗ ପ୍ରଧାନ ଉତ୍କୃଷ୍ଟ ମଦ୍ୟାସକ୍ତ ଥିଲେ । ତାଙ୍କର ୪ ପୁତ୍ର ଥିଲେ । ପ୍ରଥମପୁତ୍ର ମାନେ ବିଳାସୀ ରାଜକୁମାର ଆଡ଼ମ୍ବର ପ୍ରିୟ ଥିଲେ । ରାଜା ତପସ୍ୟାରତ ଥିଲାବେଳେ ଜନ୍ମ ଯେଉଁ କନିଷ୍ଠ ପୁତ୍ର ପ୍ରହ୍ଲାଦ ଏହି ଭୋଗରେ ନିଃସ୍ପୃହ ଥିଲେ । ରାଜା ମଦ୍ୟପ ଓ ଅହଂକାରୀ ଥିଲେ ସୁଦ୍ଧା ନିଜର ପୁତ୍ରମାନଙ୍କୁ ଉପଯୁକ୍ତ ଶିକ୍ଷା ବିଶେଷତଃ ରାଜନୀତିରେ ଉପଯୁକ୍ତ ଶିକ୍ଷିତ କରିବା ପାଇଁ ସେ ଯୁଗର ବ୍ୟବସ୍ଥା ଅନୁସାରେ ଗୁରୁଙ୍କ ଗୃହରେ ପୁତ୍ରମାନଙ୍କୁ ରଖାଇ ଥିଲେ । ଆଶା ତାଙ୍କର ଥିଲା ୪ ପୁତ୍ରଙ୍କ ମଧ୍ୟରୁ ଯେ ଯୋଗ୍ୟ ହେବ ସେ ତାଙ୍କର ଭବିଷ୍ୟତ ଏହି ଦ୍ରାବିଡ଼ ସାମ୍ରାଜ୍ୟର ଉତ୍ତରାଧିକାରୀ ହେବ । ପୁତ୍ରମାନଙ୍କର ବିଦ୍ୟାଶିକ୍ଷାର ସମସ୍ତ ଯୋଜନା ସେ କରିଥିଲେ । କିନ୍ତୁ

କନିଷ୍ଠପୁତ୍ର ପ୍ରହ୍ଲାଦ ସରଳ ସତ୍ୟବାଦୀ ନିରହଙ୍କାରୀ ସୌମ୍ୟ ଦର୍ଶନ ଏବଂ ଅଲୌକିକ ମେଧାଶୀ ପ୍ରତିଭା ମଣ୍ଡିତ ଥିଲେ । ରାଜକୀୟ ଭୋଗ ଆଡ଼ମ୍ବର ଆଭିଜାତ୍ୟରେ ତାଙ୍କର ଶ୍ରଦ୍ଧା ନଥିଲା । ସେ ସରଳ ଜୀବନ ଯାପନକରି ନିବିଷ୍ଟ ଚିତ୍ତରେ ଗୁରୁ ଦ୍ରୁଦତ୍ତ ବିଦ୍ୟା ଶିକ୍ଷା କରୁଥିଲେ । ଶ୍ରୀମଦ୍ ଭାଗବତ ସପ୍ତମ ସ୍କନ୍ଧ ପ୍ରହ୍ଲାଦ ଉପାଖ୍ୟାନ ଦେଖନ୍ତୁ । ଗୁରୁଦତ୍ତ ରାଜନୀତି ସାମଦାନ ଭେଦ ଦଣ୍ଡ ପ୍ରଭୃତି ବିଚାରକୁ ତାଙ୍କର ପସନ୍ଦ ନଥିଲା ।

ତାଙ୍କର ଅନ୍ତରରେ ସର୍ବଦା ସର୍ବଘଟ ବା ଜୀବ ଜଗତ୍ ଅଣୁ-ପରମାଣୁରେ ଈଶ୍ୱର ସତ୍ତା ବିଦ୍ୟମାନ ଏହି ଗୂଢ଼ ରହସ୍ୟ ପରମ ସତ୍ୟ ଦୃଢ଼ୀଭୂତ ହୋଇଥିଲା । ଶ୍ରୀଜଗନ୍ନାଥ ଦାସଙ୍କ ଭାଷାରେ ସକଳ ଘଟେ ନାରାୟଣ—ବସନ୍ତି ଅନାଦି କାରଣ ପଙ୍‌କ୍ତିର ଅନୁଭବ ହୋଇଥିଲା ।

ପିତା ରାଜକାର୍ଯ୍ୟ ଓ ଭୋଗରେ ବ୍ୟସ୍ତ ଥିଲେ ସୁଦ୍ଧା ପୁତ୍ରମାନଙ୍କର ବିଦ୍ୟା ଶିକ୍ଷାର ତତ୍ତ୍ୱ ନେଉଥିଲେ ବିଶେଷତଃ ପ୍ରହ୍ଲାଦ ତାଙ୍କର କନିଷ୍ଠ ପୁତ୍ର ଓ ଅଧିକ ସୁନ୍ଦର ଏବଂ ସ୍ମରଣ ଶକ୍ତିବାନ ଥିବାରୁ ରାଜା ତାଙ୍କୁ ଅଧିକ ସ୍ନେହ କରୁଥିଲେ ।

ଦିନେ ପ୍ରହ୍ଲାଦଙ୍କୁ କୋଳରେ ରାଜା ବସାଇ ଶୈଶବ ଉଚିତ ପ୍ରଲୋଭନ ଦ୍ରବ୍ୟାଦିରେ ସମ୍ମୋହରେ କୁଶଳ ପଚାରି ଗୁରୁ ପ୍ରଦତ୍ତ ବିଦ୍ୟା ସମୀକ୍ଷା କରିଥିଲେ । ପ୍ରହ୍ଲାଦ ଗୁରୁ ଅଦେୟ ଈଶ୍ୱର ରୂପୀ ସତ୍ୟରେ ବିଶ୍ୱାସ ଭୌତିକ ନିରର୍ଥକ ଇନ୍ଦ୍ରିୟ ଭୋଗ ପ୍ରଭୃତିର ଅସାରତା ପ୍ରମାଣସିଦ୍ଧ ଉତ୍ତର ଦେବାରୁ ସ୍ନେହ ପୁତ୍ର ପ୍ରହ୍ଲାଦର ଏ ବିପରୀତ ବୁଦ୍ଧିକୁ ରାଜା ପସନ୍ଦ କରି ନଥିଲେ । ଗୁରୁଙ୍କୁ ଭର୍ତ୍ସନା ପୂର୍ବକ ତାଡ଼ନା ଓ ଭୟ ପ୍ରଦର୍ଶନ ଯୋଗେ ବାଳ ସୁଲଭ ଚପଳ ମତିର ପରିବର୍ତ୍ତନ କରାଇ ବୁଦ୍ଧି ଓ ମନ ରାଜଧର୍ମୀ ହେବାକୁ ଆଦେଶ ଦେଇଥିଲେ । କିନ୍ତୁ ଗୁରୁଙ୍କର ଶତଚେଷ୍ଟା ସତ୍ତ୍ୱେ ଦୃଢ଼-ମନା ପ୍ରହ୍ଲାଦଙ୍କର ପୂର୍ବଭାବ କିଛି ପରିବର୍ତ୍ତନ ହୋଇ ନଥିଲା ବରଂ ତାହା ଅଧିକ ଦୃଷ୍ଟି ଗୋଚର ହୋଇଥିଲା । ପୁରାଣକାର ରସକୁ ଅଧିକ ଆକର୍ଷଣୀୟ ଓ ଲୋକପ୍ରିୟ ପାଇଁ ପ୍ରହ୍ଲାଦଙ୍କ ଉପରେ ଗୁରୁଙ୍କ ତାଡ଼ନା

ଓ ରାଜାଙ୍କଠାରେ ପରିଜନମାନଙ୍କ ଅତ୍ୟାଚାର ବର୍ଣ୍ଣନ କରିଛନ୍ତି । ଶ୍ରୀମଦ୍ ଭାଗବତ ୭ମ ସ୍କନ୍ଧ ପ୍ରହ୍ଲାଦ ଉପାଖ୍ୟାନ ଦେଖନ୍ତୁ । ସଙ୍ଗୀ ବାଳକମାନଙ୍କୁ ପ୍ରହ୍ଲାଦଙ୍କର ମାନ୍ତ ଉପଦେଶ ଅଧ୍ୟାୟ ପ୍ରହ୍ଲାଦଙ୍କୁ ଅଲୌକିକ ଦୃଷ୍ଟିରେ ମଣ୍ଡିତର ପରିଚୟ ଦିଏ । ସେ ଜାତସ୍ମର ଥିଲେ । ଏପରିକ ଭକ୍ତ ପ୍ରଧାନ ଭାଗବତ ଗ୍ରନ୍ଥରେ ପ୍ରହ୍ଲାଦ ସର୍ବଶ୍ରେଷ୍ଠ ଭକ୍ତ ତାଙ୍କର ଦ୍ୱିତୀୟ ତୁଳନା ନାହିଁ । ପ୍ରହ୍ଲାଦ ଜନ୍ମ ହୋଇଥିବା ଏ ଦେଶ ଏ ଜାତି ଧନ୍ୟ ।

. କିଛି ଦିନ ପରେ ପୁଣି ରାଜା ପୂର୍ବ ପରି ସୁଅବସରରେ ପ୍ରିୟ ପୁତ୍ର ପ୍ରହ୍ଲାଦଙ୍କୁ କୋଳରେ ଧରି ବିଦ୍ୟା ଶିକ୍ଷା (ବିଶେଷତଃ ରାଜନୀତି)ରେ କେତେ ଅଭିଜ୍ଞ ହୋଇଲେଣି ଜିଜ୍ଞାସା କରିବାରୁ ପୂର୍ବ ପରି ପ୍ରହ୍ଲାଦ ତାଙ୍କର ଈଶ୍ୱର ରୂପୀ ସତ୍ୟର ଶ୍ରେଷ୍ଠତା ପ୍ରକାଶକଲେ । ରାଜା ସହଜେ ମଦ୍ୟପ ୨ରେ ଅପୂର୍ବ କ୍ଷମତା ସଂପନ୍ନ ତତ୍‌କ୍ଷଣାତ୍ ନିଜ କୋଷାଚ୍ଛାଦିତ କରବାଳ ନିଃଷ୍କାସନ କରି ପ୍ରହ୍ଲାଦଙ୍କୁ ହତ୍ୟାକରିବାରେ ଅଭିନୟ ଦେଖାଇଲେ । ଧାରଣା ମୃତ୍ୟୁ ଭୟରେ ପୁତ୍ର ତାଙ୍କ ବିପଥ ପରିତ୍ୟାଗ କରି ମୋହରି ପ୍ରଦର୍ଶିତ ପନ୍ଥା ଅନୁସରଣ କରିବ । ପ୍ରହ୍ଲାଦଙ୍କୁ କୋଳରୁ ବାହାର କରି ଦେଇଥିଲେ ନିଜ ଅସିର ପ୍ରଚଣ୍ଡତା ପ୍ରମାଣ କରି ସ୍ତମ୍ଭରେ ଆଘାତ ଦେଇଥିଲେ । ଏହି ଉପ୍ଲାବହ ଘଟନା ଅପଲକ ନୟନରେ ତାଙ୍କ ପୋଷା ସିଂହ ଯେକି ରାଜାଙ୍କ ସମୀପରେ ସବୁବେଳେ ଥାଏ, ଦେଖୁଥିଲା । ଦେଖି ଦେଖି ସିଂହ ଚଣ୍ଡ ହେଲେହେଁ ତାର ଧାରଣା ଆସିଲା ରାଜା ଅତ୍ୟଧିକ ମଦ୍ୟ ପାନ କରି ଉନ୍ମତ୍ତ ହୋଇ ନିଜର ପ୍ରିୟ ପୁତ୍ରକୁ ମାରିଦେବେ । ତତ୍‌କ୍ଷଣାତ୍ କ୍ରୋଧୋନ୍ମତ୍ତ ସିଂହ ରାଜାଙ୍କ ଉପରେ ଲମ୍ଫ ଦେଇ ତାଙ୍କୁ ବିଦାରଣ କରି ବଧ କରିଥିଲା ଏବଂ ରାଜା ପୁରର ବହୁଲୋକମାନଙ୍କୁ ବିନାଶ କରି କୋଳାହଳ ମଧ୍ୟରେ ପଳାୟନ କରିଥିଲା ।

ଏହି ଅଲୌକିକ ଆକସ୍ମିକ ଘଟଣାକୁ କାବ୍ୟକାର ନୃସିଂହ ଅବତାର ରୂପରେ ଚିତ୍ର କରିଛନ୍ତି ।

. ପୁଣି ତୁଳନା ଦେଲେ ଏଯୁଗରେ ୨ୟ ମହାଯୁଦ୍ଧ ବେଳେ

ଆବସିନିଆ ସମ୍ରାଟ ଇଟାଲି ଶକ୍ତିଙ୍କ ଠାରୁ ହାରି ଇଂଲଣ୍ଡରେ ଶରଣ ପଶିଲା ବେଳେ ସାଥିରେ କେତେ ଗୋଟି ପୋଷା ସିଂହ ନେଇଯାଇଥିଲେ । ନିଜର ଆତ୍ମରକ୍ଷା ପାଇଁ ପ୍ରଜାମାନଙ୍କୁ ଭୟଭୀତ କରିବା ପାଇଁ ପୂର୍ବ-କାଳରେ ଶାସକ ମାନେ ନିଜ ପାଖରେ ପୋଷା ସିଂହ ରଖୁଥିଲେ ।

ପ୍ରହ୍ଲାଦ ଉପାଖ୍ୟାନ ଦେଖନ୍ତୁ । ଉନ୍ମତ୍ତ ସିଂହଙ୍କୁ କେହି ରୋକି ପାରିନଥିଲେ । ନୃସିଂହ ପ୍ରହ୍ଲାଦଙ୍କୁ ଅଭୟ ଦେଲେ । ନୃସିଂହ ପ୍ରହ୍ଲାଦଙ୍କ ନିକଟରେ ଆଶ୍ରୟ ଦାତା ପିତାତୁଲ୍ୟ କୋମଳ ଓ ଶାନ୍ତ ରୂପଥିଲେ । ଲକ୍ଷ୍ମୀ (ଗଜ ଙ୍ଗସଦ ପିଠୁ ସିଂହାସନ ଆଦି) ମାତୃ ରୂପରେ ବର ଦାୟିନୀ ହେଲେ । ପରେ ବ୍ରହ୍ମାଦି ତ୍ରିଲୋକ ବାସୀଙ୍କ ସ୍ତୁତି ଦେଖାଯାଏ । ଅର୍ଥାତ୍ ଏହି ପରବର୍ତ୍ତିନକୁ ତ୍ରିଭୁବନ ବା ସେ କାଳର ସମାଜ ଅନୁମୋଦନ କରିଥିଲେ । ବ୍ରହ୍ମା ପ୍ରଭୃତି ଦେବଗଣ ଓ ସିଦ୍ଧ ନାଗ ଗୃହଣାଦି ବହୁଜନ ନେତାଙ୍କର ସ୍ତୁତି ଦେଖାଯାଏ ମାତ୍ର ଦୈତ୍ୟ ସୈନ୍ୟଙ୍କର ଚିହ୍ନ ନାହିଁ, ସବୁ ବିନାଶ ହୋଇଥିଲେ ।

ସିଂହ ପଶୁ ହେଲେ ହେଁ ତାର ହୃଦୟ ଅଛି ବିଖ୍ୟାତ ଆଣ୍ଡ୍ରୋକ୍ଲସ୍ ଓ ସିଂହ ଉପାଖ୍ୟାନର ଉପମାଦେଲେ ।

କହିଲି ଶ୍ରୀଧର ସ୍ୱାମୀଙ୍କର ଭାବନା ସେ ସ୍ମରଣକୋଶ ଭକ୍ତ ଯଥା ପ୍ରହ୍ଲାଦ ସ୍ମରଣେ ଶ୍ରୀମଦ୍ ଭାଗବତ ପ୍ରଥମ ଶ୍ଳୋକର ଟୀକାରେ ଶ୍ରୀଧର ଏପରି ଭାବରେ ଶ୍ରୀନୃସିଂହଙ୍କୁ ଚିନ୍ତା କରିଛନ୍ତି ଏବଂ ତାଙ୍କର କୃପାଳଭ କରିଛନ୍ତି ।

ଶ୍ଳୋକ

ବାଗୀଶା ଯସ୍ୟ ବଦନେ
ଲକ୍ଷ୍ମୀର୍ଯସ୍ୟ ଚବକ୍ଷସି
ଯସ୍ୟାସ୍ତେ ହୃଦୟେ ସମ୍ବିତ୍
ଓଁ ନୃସିଂହଂ ଅହଂ ଭଜେ । ୧ ।

ଅର୍ଥାତ୍—ଯାହାର ମୁଖରେ ସରସ୍ୱତୀ ଯାହାର ବକ୍ଷ ସ୍ଥଳରେ ଲକ୍ଷ୍ମୀ ଯାହାର ହୃଦୟରେ ସତ୍ୟ ସେହି ପରମାତ୍ମା ଶ୍ରୀ ନୃସିଂହଙ୍କୁ ମୁଁ ଭଜନ କରୁଛି ।

ଯେଉଁ ରୂପରେ ସେହି ପରମାତ୍ମା ଭକ୍ତ ଶିରୋମଣି ପ୍ରହ୍ଲାଦଙ୍କ ସ୍ମରଣରେ ଦେଖା ଦେଇଥିଲେ ସେହି ରୂପଧାରୀ ସମ୍ବିତ୍ ବା ସତ୍ୟଙ୍କୁ ଶ୍ରୀଧର ସର୍ବଦା ଭଜୁଥିଲେ ।

କହିଲ ଏଯୁଗ କଥା ମହାତ୍ମା ଗାନ୍ଧିଙ୍କୁ ଫରାସି କବି ରୋମାଁରୋଲ ପଚାରିଥିଲେ—ଆପଣଙ୍କର ଧର୍ମ କଅଣ ? ଗାନ୍ଧିଜୀ ଉତ୍ତର ଦେଲେ ହାମର୍ସ୍ମି ମୋର ଧର୍ମ ।

ପ୍ରଶ୍ନ—ଈଶ୍ବର କିଏ ? ହସି ହସି ଗାନ୍ଧି ଉତ୍ତର ଦେଲେ, ସତ୍ୟହିଁ ଭଗବାନ୍ ସାକ୍ଷାତ ଈଶ୍ବର ।

ଶେଷରେ ପ୍ରବୀଣ ଅଧ୍ୟାପକ ବୃନ୍ଦ ପ୍ରମୋଦରେ ସ୍ୱୀକାର କରିଲେ ସତ୍ୟବାଦୀ ଅହିଂସା ପରାୟଣ ଜୀବମାନଙ୍କ ଜୀବନ ରକ୍ଷା ଏପରି ଆକସ୍ମିକ ରୀତିରେ ହୋଇଥାଏ । ଧର୍ମୋରକ୍ଷତି ଧାର୍ମିକଂ ପ୍ରବାଦସତ୍ୟ । ଭକ୍ତ ପ୍ରହ୍ଲାଦ ସଂସାର ଥିଲେ ଉନ୍ନତ ପ୍ରାଚୀନ ଦ୍ରାବିଡ଼ ବା ଦୈତ୍ୟ କୁଳର ଅଧିପତି ହେଲେହେଁ ତାଙ୍କର ରାଜ୍ୟ ଶାସନ ଓ ପ୍ରତ୍ୟେକ୍ କାର୍ଯ୍ୟ ସତ୍ୟାନୁ-ମୋଦିତ ଥିଲା । ଯଥା ସମୟରେ ସେ ରାଜ ସୁଖ ବା କ୍ଷମତା ଦାୟିତ୍ୱ ସୁଯୁତ୍ର ହସ୍ତରେ ପ୍ରଦାନ କରିଥିଲେ । ତାଙ୍କ ଚିତ୍ତ ସର୍ବଦା ନୃସିଂହରୂପୀ ସମ୍ବିତ୍ ବା ସତ୍ୟ ଭଜନ କରୁଥିଲା ଓ ସେ ସତ୍ୟର ଉପାସକ ଥିଲେ । ତେଣୁ ପୁରାଣକାର ପ୍ରହ୍ଲାଦଙ୍କୁ ଚିରଞ୍ଜିବୀ (ଅମର) ପରମ ରୂପରେ ଚିତ୍ର ଦେଇଛନ୍ତି । ଶ୍ରୀ ନୃସିଂହଙ୍କ ଆଶୀର୍ବାଦରୁ ତାଙ୍କର ବଂଶ ଯାବତ୍ ଚନ୍ଦ୍ରାର୍କେ ବଳଯୁ ହେବନ ଇତ୍ୟାଦି ।

ସତ୍ୟସନ୍ଧ ଅହିଂସା ପରାୟଣ ବ୍ୟକ୍ତି ବା ଜୀବଙ୍କର ସର୍ବ ଭୂତରେ ଈଶ୍ବର ସତ୍ତା ଚେତନଅଚେତନ ଅଣୁ ପରମାଣୁରେ ସମ୍ବିତ୍ ବା ସତ୍ୟର ସତ୍ତା ଅନୁଭୂତ ଯୋଗୁ ଯେଉଁ ପରମାନନ୍ଦ ଜାତ ହୁଏ ତାହା ପ୍ରଭାବରେ

ଦୁଃଖ ସୁଖ ଉଦ୍ଭବ ଅନବଚ୍ଛିନ୍ନ ଭାବାବେଶ ହୋଇଥାଏ ସେଥିରେ ପ୍ରାଣୀ ବା ଜୀବକୁ ବିନାଶ କରିବା ଦୂର କଥା ତାଙ୍କର ଅନିଷ୍ଟ ପାଞ୍ଚୁଥିବା ବା ଆଚରଣ କରୁଥିବା ଆସୁରିକଶକ୍ତିର ଏଥିର ଆକସ୍ମିକ ଧ୍ୱଂସ ଘଟେ । ଶେଷରେ ଅଧ୍ୟାପକ ବୃନ୍ଦ ହର୍ଷରେ ଧର୍ମୋଲ୍ଲେଖିତ ଧାର୍ମିକଂ ପ୍ରବାଦକୁ ସତ୍ୟ ବୋଲି ସ୍ୱୀକାର କଲେ ।

ପରମହଂସ ଶ୍ରୀରାମକୃଷ୍ଣ ଦେବଙ୍କର ନିମ୍ନୋକ୍ତ ପଂକ୍ତି ମନେ ପଡ଼ିଲେ ନିକଟରେ ସମୁଦ୍ର କେଉଁ ଅନନ୍ତ କାଳରୁ ଅବିରାମ ଭାବରେ ତରଙ୍ଗ ସୃଷ୍ଟି କରୁଛି ଜୀବ ଜଗତ ଅଭିନୟର ପ୍ରତ୍ୟକ୍ଷ ସାକ୍ଷୀ ହେଲା-ଭୂମିରେ ଚିନ୍ତା କରୁ କରୁ ମନେ ପଡ଼ିଲା ରତ୍ନାକରରେ ଥରେ ବୁଡ଼ିଦେଇ ରତ୍ନ ନା ପାଇଲେ ରତ୍ନାକରକୁ ରତ୍ନ ଶୂନ୍ୟ ମନେ ନାକରୁନ୍ । ପୁରୀ ଶ୍ରୀକ୍ଷେତ୍ରଧାମରେ ଶ୍ରେଷ୍ଠ ଏଠାରେ ସବୁ ଅଛି କେଉଁ ଅନନ୍ତ କାଳରୁ ଜନ୍ମ ଅଜନ୍ମା ଭକ୍ତମାନେ ଏଠାରେ ସବୁ ଭରପୂର । ପ୍ରଭୁ ନିକଟରେ ସନ୍ନ୍ୟାସୀ ଏଠାରେ କଣ୍ଠି ମିଳିବନି । ପୁଣି ଅଧିବେଶନକୁ ଫେରି ଯିବା ଭୋଜନ ବେଳରେ ସଦାନନ୍ଦ ଶ୍ରୀ ହରିହର ବାହିନୀ ପତିଙ୍କୁ ମନ ଦୁଃଖ ଜଣାଇଲି । ସେ ତତ୍-କ୍ଷଣାତ୍ କହିଦେଲେ ଶଙ୍କରାନନ୍ଦ ମଠକୁ ଯାଅ ତଥ୍ୟ ପାଇଯିବ । ବାଟ ବତାଇ ଦେଲେ ବାଟରେ ଶ୍ୟାମାକାଳୀ ଶଙ୍କରାଚାର୍ଯ୍ୟ ମଠ ପରେ ଶଙ୍କରାନନ୍ଦ ମଠ ଭୁଲିବେ ନାହିଁ । ପୁରୀ ଧାମରେ ବହୁତ ମଠ ବିଦ୍ୟମାନ ଭକ୍ତମନ୍ଦ ସବୁ ଅଛି ।

ମଠରେ ମିଳିଲି । ବହୁତ ଛୋଟ ଭଗ୍ନ ଅର୍ଦ୍ଧଭଗ୍ନ ଅଳିନ୍ଦ ପ୍ରାଙ୍ଗଣ ନିର୍ଜୀବ ନିସ୍ତବ୍ଧ ବୋଧହେଲେ । ମଧ୍ୟ ପ୍ରବେଶ ଦ୍ୱାରରେ କେତେ ଜଣ ଦେଖି ବିଶ୍ୱାସ ହେଲା ଲୋକମାନେ ଅଛନ୍ତି ।

ମଠରେ ପ୍ରଥମେ ମଠାଧିଶଙ୍କର ଶିଷ୍ୟ ଭେଟହେଲେ । ମଠ ସବୁ ବୁଲାଇ ଦେଖାଇଲେ । ସନ୍ଧ୍ୟାବେଳକୁ ମଠାଧିଶ ଉଠିଲେ ଭେଟହେଲା । ବାକ୍ୟାଳାପ ହେଲା । ବିଶ୍ୱବିଦ୍ୟାଳୟର ଛାତ୍ର କେତେଜଣ ରହି ଅଛନ୍ତି । ଶିଷ୍ୟ ଶ୍ରୀ ନୃସିଂହ ବିଗ୍ରହଙ୍କୁ ସନ୍ଧ୍ୟାରେ ଦେଖାଇଲେ ପିତଳ ମୂର୍ତ୍ତି ଟକ୍ ଟକ୍ ଉଜ୍ଜ୍ୱଳ । ମଠାଧିଶ ମଠର ଇତିବୃତ୍ତ କହିଲେ ।

ଏହି ମଠ ଆଦ୍ୟ ଶଙ୍କରଙ୍କ ଶିଷ୍ୟ ପଦ୍ମପାଦାଚାର୍ଯ୍ୟ ପ୍ରତିଷ୍ଠା କରିଥିଲେ । ତାଙ୍କର ଶିଷ୍ୟ ପରମ୍ପରାରେ କେତେ ପୁରୁଷପରେ ଶ୍ରୀଧର ସ୍ୱାମୀ ଏହି ମଠରେ ମଠାଧିଶ ହୋଇଥିଲେ । ଏଠାରେ ସେ ଶ୍ରୀମଦ୍‌ଭାଗବତ ଶ୍ରୀମଦ୍‌ଭାଗବତ ଗୀତା ପ୍ରଭୃତିର ଟୀକା କରିଥିଲେ । ସେ ନୃସିଂହ ବିଗ୍ରହଙ୍କୁ ଏଠାରେ ସ୍ଥାପନା କରିଥିଲେ । ମଠର ବହୁତ ସମ୍ପତ୍ତି ଓ ପ୍ରତିପତ୍ତି ଥିଲା । ସବାଶ ଚଉଡ଼ୋଳ ଦେଖାଇଲେ । ଏଥିରେ ବସି ଆଡ଼ମ୍ବରରେ ମହନ୍ତ ବା ମଠାଧିଶ ଯାତ୍ରା କରୁଥିଲେ । ଦେଶ ସ୍ୱାଧୀନପରେ ଧୀରେ ଧୀରେ ସବୁ ଚାଲିଯାଉଛି । ଯାହାଅଛି ଦେବୋତ୍ତର ବିଭାଗ ଏକାଳ ଶାସକ ସବୁ ନେଇଗଲେ । ଆମେ ବର୍ତ୍ତମାନ ଦାସଦାସୀ ପୂଜକ ପାଚକ ଚାକରଚାକରାଣୀ ମିଶି ୧୦ ପ୍ରାଣୀ ଶ୍ରୀଜଗନ୍ନାଥଙ୍କ ଧାନ୍ନକର ଯେନକେନ ପ୍ରକାରେ ବଞ୍ଚିଛୁ । ନ୍ୟାୟାଳୟରେ ଆଶ୍ରୟ ନେଇଛୁ ।

ପ୍ରଶ୍ନକଲି ମହାଶୟ ଶ୍ରୀଧର ସ୍ୱାମୀଙ୍କ ପରି ସାଧକ ଓ ଭକ୍ତ କଅଣ ଏ ରାଜକୀୟ ସାମନ୍ତ ଆଡ଼ମ୍ବରରେ ରହି ତାଙ୍କର ସାଧନା ବା ଟୀକା ପ୍ରଣୟନ କରୁଥିଲେ ? ମଠର ମୂଳ ଆଦର୍ଶ ଯାହା ଥିଲା ତାହା କଅଣ ବର୍ତ୍ତମାନ ଅଛି କି ? ଦେବ ଦୟାଦାନ ମଧ୍ୟରୁ ଦେବ ଅଛନ୍ତି ମାତ୍ର । ସାମାନ୍ୟ ସଂସ୍କୃତ ବିଦ୍ୟାର୍ଥୀ ( ପ୍ରାୟ ଚାରିବ ) ମାନଙ୍କଠାରୁ ଆଠଣି ଗୃହବାସ ଆକାରରେ ଭଡ଼ା ନେଉଅଛନ୍ତି । ଗମ୍ଭୀର ସ୍ୱରରେ ଉତ୍ତର ମିଳିଲା ମଠ ଚଳିବ କିପରି ?

କେତେ କବି ଲେଖକ ସାମ୍ବାଦିକ ଆସୁଅଛନ୍ତି, ଏ ପର୍ଯ୍ୟନ୍ତ ଆମର କିଛି ହେଲା ନାହିଁ । କହୁଛନ୍ତି ଆମ ପାଇଁ କିଛି ଲେଖିବେ କରିବେ, ଆମ ପୂର୍ବ ଗୌରବ ପ୍ରତିପତ୍ତି ଫେରିବ, ଜାଣିଁ କିଛି ହେଉନ ।

ଅନୁମାନରୁ ଜାଣିଲି ମଠାଧିଶ ସଂପୂର୍ଣ୍ଣ ରାଜନୀତିରେ ବ୍ୟସ୍ତ ଭକ୍ତଳୀୟ ଭାବରେ, ଫଳ କେବେ ମିଳିବ ତାଙ୍କୁ ଜଣା ।

ମନ ସନ୍ତୋଷ ହେଲାନ । ଏ ପର୍ଯ୍ୟନ୍ତ ୧—ଜଗଦ୍‌ଗୁରୁ ଶ୍ରୀ ଶଙ୍କର ୨—ଶ୍ରୀ ରାମାନୁଜ ୩— ଶ୍ରୀ ମାଧ୍ୱ ୪—ଶ୍ରୀବଲ୍ଲଭ ୫—ଲଳାବତାର

ଶ୍ରୀ ଚୈତନ୍ୟ ପ୍ରସିଦ୍ଧ ପଞ୍ଚମୋଚ୍ଚାର୍ଯ୍ୟ ପରେ ଛଅ ସଂଖ୍ୟାରେ ଆଉ ଅଚ୍ଚାର୍ଯ୍ୟ ଜନ୍ମ ହୋଇନାହାନ୍ତି ।

ଶ୍ରୀଧର ସ୍ୱାମୀ ଶଙ୍କରଙ୍କର ତିରୋଧାନ ପରେ କେଉଁ ଆଚାର୍ଯ୍ୟଙ୍କ ବେଳରେ ବା ପରେ ତାହାର ସଠିକ୍ ଉତ୍ତର ମିଳନ୍ତି ନାହିଁ ।

ଶ୍ରୀ ଜଗନ୍ନାଥଙ୍କ କୃପାରୁ ନିଜ ଆବର୍ଜନା ଅନ୍ତର୍ଭେଦ୍ୟ ପୁସ୍ତକାବଳୀ ମଧ୍ୟରୁ ରାୟ ବାହାଦୁର ୮ ଚିନ୍ତାମଣି ଆଚାର୍ଯ୍ୟଙ୍କର ଶ୍ରୀମଦ୍ ଭାଗବତ ୨ୟ ସ୍କନ୍ଧ ମୂଳ ଶ୍ଳୋକ ସହ ଶ୍ରୀଧର ସ୍ୱାମୀଙ୍କ ସୁବୋଧିନୀ ଟୀକା ତତ୍କୃତ (ଚିନ୍ତାମଣି କୃତ) ଉତ୍କଳାନୁବାଦ ଜଗନ୍ନାଥ ଦାସଙ୍କ ପଦ୍ୟ ବଳ କର୍ଣ୍ଣର ଦାସଙ୍କ ପଦ୍ୟ ସମ୍ବଳିତ ୧୯୪୩ ମସିହା ମୁଦ୍ରିତ ପୁସ୍ତକ ପାଇଲି । ବୋଧହୁଏ ପ୍ରଥମ ମୁଦ୍ରଣ ପରେ ୨ୟ ମୁଦ୍ରଣ ଆଉ ହୋଇନି । କିଏ କରିବ ? ଏ ଯୁଗରେ କିସ ପ୍ରୟୋଜନ ? ଯୋଗୀରାଜ ଅରବିନ୍ଦଙ୍କ ଭାଷାରେ ଶ୍ରୀକୃଷ୍ଣ ଲୌକିକ ସ୍ୱତନ୍ତ୍ରତା ଏ ଦେଶବାସୀମାନଙ୍କୁ ଦେଇଛନ୍ତି । ଯେକୌଣସି ନ୍ୟାୟ ହେଉ ବା ଅନ୍ୟାୟ ଅସତ୍ ହେଉ ଅର୍ଥ ବଳରେ ନିଜର ଭୌତିକ ସୁଖ କ୍ଷଣିକ ପ୍ରତିଷ୍ଠା ପାଇଁ ସମସ୍ତେ ବ୍ୟଗ୍ର । ଜଗନ୍ନାଥ ଦାସଙ୍କ ନବାକ୍ଷରୀ ପଦ୍ୟ ପଢି ପାରିବା ସହୃଦୟରେ ଥିବା ଲୋକେ ଏ ଯୁଗରେ ବିରଳ । ସେଗୁଡ଼ାକ ପୁରାତନ । ସେହି ଆଚାର୍ଯ୍ୟ ଚିନ୍ତାମଣିଙ୍କ ପ୍ରଣୀତ ୨ୟ ସ୍କନ୍ଧରେ ଯାହା ଲିପିବଦ୍ଧ ଅଛି ତାହା ଅବିକଳ ନିମ୍ନରେ ପ୍ରଦତ୍ତ ହେଲା । ସେହି ସ୍ୱର୍ଗୀୟ ପ୍ରଥମ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଆଇନ ଜୀବୀଙ୍କ କୃଷ୍ଣରେ ଏ ଅଧମ ଲେଖକ ଚିର ଋଣୀ ।

ଶ୍ରୀ ବିଶିଷ୍ଟ ଦ୍ୱୈତବାଦୀ ଶ୍ରୀ ରାମାନୁଜାଚାର୍ଯ୍ୟ ଖ୍ରୀଷ୍ଟିୟ ୧୦୧୭ ଅବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ସେ ୧୨୦ ବର୍ଷ ଜୀବିତ ଥିଲେ କୁହାଯାଏ । ସେ ଶ୍ରୀ ସଂପ୍ରଦାୟର ପ୍ରବର୍ତ୍ତକ । ତାହାଙ୍କ (ରାମାନୁଜ) ପ୍ରଣୀତ ବେଦାନ୍ତ ସାରତତ୍ତ୍ୱ ଗ୍ରନ୍ଥରେ ବହୁ ସ୍ଥାନରେ ସେ ଶ୍ରୀମଦ୍ ଭାଗବତରୁ ଉଦ୍ଧାର କରିଅଛନ୍ତି । ବେଦାର୍ଥ ସଂଗ୍ରହ ଗ୍ରନ୍ଥରେ ମଧ୍ୟ ସେ ସାତ୍ତ୍ୱିକ ତତ୍ତ୍ୱ ପ୍ରସଙ୍ଗରେ ଶ୍ରୀମଦ୍ ଭାଗବତର ଏକାଦଶ ସ୍କନ୍ଧରୁ ସ୍ଥଳ ବିଶେଷରେ ଉଲ୍ଲେଖ କରିଅଛନ୍ତି ।

ବୋପଦେବଙ୍କ ସମସାମୟିକ ହେମାଦ୍ରୀ ଶ୍ରୀଧର ସ୍ୱାମୀଙ୍କର ଭାଗବତ ଟୀକା ସ୍ଥଳ ବିଶେଷରେ ଉଲ୍ଲେଖ କରିଅଛନ୍ତି । ଶ୍ରୀଧର ସ୍ୱାମୀ ଉତ୍କଳର ପୂର୍ବ ଭାରତୀୟ ରାଜ୍ୟାନ୍ତର୍ଗତ ଢେଙ୍କାନାଳ ରାଜ୍ୟରେ କପିଳାସ କନ୍ଦରରେ ଅବସ୍ଥାନ କରି ଶ୍ରୀମଦ୍ ଭାଗବତ ପୁରାଣର ଟୀକା ପ୍ରଣୟନ କରିଥିଲେ ବୋଲି ଢେଙ୍କାନାଳର ଇତିହାସରୁ ପ୍ରମାଣ ମିଳେ । ଉତ୍କଳ ଐତିହାସିକମାନଙ୍କ କପିଳାସ କନ୍ଦର ଯୋଗୀ ମୁନିମାନଙ୍କର ନିବାସର ଯଥାର୍ଥ ସ୍ଥାନ କହିଲେ ଅତ୍ୟୁକ୍ତି ହେବ ନାହିଁ । କଳିଯୁଗର ଶୁକଦେବ ଶ୍ରୀ ଶ୍ରୀଧର ସ୍ୱାମୀ ଏହି ପ୍ରାକୃତିକ ସୁଲଭ ରମଣୀୟ ପର୍ବତ ଶିଖରରେ ଅବସ୍ଥାନ କରି ଶ୍ରୀମଦ୍ ଭାଗବତର ଟୀକା ପ୍ରଣୟନ କରିଥିବା ସମ୍ଭବ ।

ଶ୍ରୀଯୁକ୍ତ ଶ୍ରୀଧର ସ୍ୱାମୀ ନୀଳାଚଳ କ୍ଷେତ୍ରସ୍ଥ ଭୋଗ ବର୍ଦ୍ଧକ ପୀଠ ( ଶଙ୍କରାଚାର୍ଯ୍ୟ ମଠ )ର ମହେଶ୍ୱରାନନ୍ଦ ସରସ୍ୱତୀଙ୍କର ପ୍ରଶିଷ୍ୟ ଏବଂ ରାମକୃଷ୍ଣ ଯତୀଙ୍କର ଶିଷ୍ୟ । ଯତୀ ରାମକୃଷ୍ଣାନନ୍ଦ ସ୍ୱୀୟ ଜୀବନରେ ଅତ୍ୟନ୍ତ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ତାହାଙ୍କର ବୈଦିକ ସାହିତ୍ୟରେ ଅଲୌକିକ ଜ୍ଞାନ ଏବଂ ସର୍ବ ଶାସ୍ତ୍ର ପାରଦର୍ଶିତା ସହିତ ଋଷି ତେଜ ସଂଦର୍ଶନରେ ମୁଗ୍ଧ ହୋଇ ସେକାଳର ଗଜପତି ମହାରାଜ ପ୍ରତାପରୁଦ୍ର ତାଙ୍କ ଉପରେ କପିଳାସ ମନ୍ଦିରର ସମସ୍ତ ସେବା ପୂଜାର ଭାର ଅର୍ପଣ କରିଥିଲେ । ତ୍ରୟୋଦଶ ଶତାବ୍ଦୀର ଶେଷ ପାଦରୁ ପ୍ରତାପ ନରସିଂହ ଦେବଙ୍କଦ୍ୱାରା କପିଳାସସ୍ଥ ଶିଖରେଶ୍ୱର ମନ୍ଦିର ନିର୍ମାଣ ଓ ପୀଠ ପ୍ରତିଷ୍ଠା ହେଲାଦିନୁ ଗଜପତି ମହାରାଜାମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ କପିଳାସର ସେବା ପୂଜା ଚଳି ଆସୁଥିଲା । X ( Vide Kapilas Inscri-ption JA-S-B-) ଯତୀ ରାମକୃଷ୍ଣ ସ୍ୱ ଶିଷ୍ୟ ଶ୍ରୀଧର ସ୍ୱାମୀଙ୍କୁ ସର୍ବଶାସ୍ତ୍ର ପାରଦର୍ଶୀ ଏବଂ ଅଦ୍ୱିତୀୟ ଗ୍ରନ୍ଥାକାର ଦେଖି କପିଳାସ ପୀଠର ସ୍ୱତ୍ୱାଧିକାର ତାଙ୍କ ଉପରେ ଅର୍ପଣ କଲେ । ଶ୍ରୀଧରଙ୍କୁ କବିଜନ ବାଞ୍ଛିତ ତୁଷି ଆଶ୍ରମ ମିଳିଲା । ବର୍ତ୍ତମାନ ମଣିକର୍ଣ୍ଣିକା ଓ ବିଶ୍ୱନାଥ ମନ୍ଦିରର ନିକଟବର୍ତ୍ତୀ ଯେଉଁ ପ୍ରାଚୀନ ମଠ କପିଳାସରେ ଦେଖାଯାଏ ତାହା ବ୍ରହ୍ମଚାରୀ ମଠ ନାମରେ ବିଖ୍ୟାତ । ଏହି ମଠର ବ୍ରାହ୍ମଣ ବ୍ରହ୍ମଚାରୀମାନେ ପୁରୀର ଶଂକରାନନ୍ଦ ମଠର

ତନ୍ତ୍ରାବଧାନରେ ଅଧିକାର ପ୍ରାପ୍ତ ହୁଅନ୍ତି ଏବଂ ଅଦ୍ୟାବଧି ବ୍ରହ୍ମଘଣ୍ଟା ମଠରେ ଶାଖା ରୂପେ ପ୍ରସିଦ୍ଧ ।

ଯତି ଶ୍ରୀଧର ସ୍ୱଗୁରୁ ଙ୍କର ଇଷ୍ଟଦେବ ଶ୍ରୀଲକ୍ଷ୍ମୀ ନୃସିଂହ ବିଗ୍ରହଙ୍କୁ କାଞ୍ଚିରୁ ଆଣି ଲଳିତ ଶିଳ୍ପ କଳାମଣ୍ଡିତ ଶ୍ରୀ ପାର୍ବତୀ ମୂର୍ତ୍ତିର ପାର୍ଶ୍ୱରେ ଏକ ମନ୍ଦିର ମଧ୍ୟରେ ସ୍ଥାପନକରି ତାଙ୍କ ସେବାରେ ଓ ପାର୍ବତୀ ଚନ୍ଦ୍ରଶେଖରଙ୍କ ଆରାଧନାରେ ଆତ୍ମନିୟୋଗ କଲେ । ଶିବକ୍ଷେତ୍ର ମଧ୍ୟରେ ନୃସିଂହ ମୂର୍ତ୍ତି ଅବସ୍ଥାନର ଏହାହିଁ ହେତୁ ସେହି ଲକ୍ଷ୍ମୀ ନୃସିଂହଙ୍କର ଅନୁଗ୍ରହ ଫଳରେ ଓ ପାର୍ବତୀ ଚନ୍ଦ୍ରଶେଖରଙ୍କର ବର ଲାଭ କରି ଶ୍ରୀଧର ବିଷ୍ଣୁପୁରାଣ ଶ୍ରୀମଦ୍ ଭାଗବତ ଏବଂ ଶ୍ରୀମଦ୍ ଭଗବତ୍ ଗୀତାଦିର ଟୀକା ରଚନା କରିଥିବାର ତାଙ୍କ ନିଜ ରଚିତ ଗ୍ରନ୍ଥରୁ ଆଭାସ ମିଳେ । (ଶ୍ରୀନୃସିଂହ ମହଂ ଭଜେ) ଇତ୍ୟାଦି ଭାଗବତର ଟୀକା ଦେଖନ୍ତୁ ।

ଏହିକଥା ଗୋବର୍ଦ୍ଧନ ପୀଠର ଗୁରୁପରମ୍ପରା ଗ୍ରନ୍ଥରେ ଯେପରି ବର୍ଣ୍ଣିତ ଅଛି ତାହା ଅବିକଳ ଏଠାରେ ପ୍ରଦତ୍ତ ହେଲା । ଏହି ଗୁରୁ-ପରମ୍ପରା ଉତ୍କଳର ବରେଣ୍ୟ ମନୀଷୀ ଭୂତପୂର୍ବ ରେଭେନ୍ସା କଲେଜର ପ୍ରଫେସର ଏବଂ ପୁରୀ ସଂସ୍କୃତ କଲେଜର ନ୍ୟାୟଶାସ୍ତ୍ରାଧ୍ୟାପକ ମହାମହୋପାଧ୍ୟାୟ ପଣ୍ଡିତ ଶ୍ରୀଜଗନ୍ନାଥ ମିଶ୍ର ତର୍କ ସାଂଖ୍ୟ ନ୍ୟାୟତୀର୍ଥ ମହୋଦୟଙ୍କ ଦ୍ୱାରା ସଂକଳିତ ହୋଇଅଛି ।

ପୀଠେଽସ୍ୟ ଶିଷ୍ୟୋଽଥ ଗୋବର୍ଦ୍ଧନେ
ମହେଶ୍ୱର ନନ୍ଦ ସରସ୍ୱତୀ ବସନ୍
ନୀଳାଦ୍ରିନାଥଂ ପୁରତଃ ଯଥାପୁର
ନଶ୍ୱରତେ ସ୍ୱାଶ୍ରମ କୃତ୍ୟ ତତ୍ପରଃ । ॥ ୧ ॥
ଶ୍ରୀରାମକୃଷ୍ଣା ନଦୋଽଭୂତ୍ ଶିଷ୍ୟସ୍ତସ୍ୟ ମହାଯତିଃ
ସ୍ୱର ବଞ୍ଜନ ନୈପୁଣ୍ୟାତ୍ ପୁଣ୍ୟଂ ଚେନେ ମହତ୍ଯଶଃ
ଦେବକେତ୍ୟ ଦତ୍ତୌତସ୍ମୈ ସ୍ୱାମୀବର୍ଯ୍ୟାୟ ନେତୃତାଂ
ପ୍ରତାପରୁଦ୍ର ନୃପତି (କପିଳେଶ) କପିଳାସ ଶିବାଳୟେ

ତତଃଶିଷ୍ୟୋଽଭୂତ୍ ଶ୍ରୀଧର ସ୍ୱାମୀ ପାଦୋ ଜପ୍ତ୍ୱାନ୍ତଦ୍ୟେଂ
ମନ୍ତ୍ରରାଜଂ,ସଭକ୍ତ୍ୟା ବଦ୍ୟା ଗୁରୁର୍ଦ୍ଦ ଶସ୍ୟ ମଭ୍ୟାସ
ବଶ୍ୟଂ ସ୍ୱସ୍ୟକ୍ଷିପ୍ତଂ ବପ୍ରମୋଷଂ ତତାନ ॥ ୨ ॥

ଶ୍ରୀମଦ୍ ଭାଗବତଂ ମୁଗ୍ଧତବଶଦଂ ବ୍ୟାଖ୍ୟାୟ ସୁଖ୍ୟାତିମାନ୍
ବଶ୍ୱସ୍ୟୋପକୃତଂ ଚକାର ନଚସ୍ତଂ ତତ୍ତ୍ୱାର୍ଥ ମାଧ୍ୱପ୍ୟେନ୍
ପ୍ରାଧାନ୍ୟଂ ଗିରଶୋ ନୃସିଂହ କରୁଣାପୁତ୍ରଂ ବଭାଷେଽ ସଂଭୁ
ବ୍ୟାସୋବେତ୍ତି ନବାଽଥବେତ୍ତି ବଚନଂ ଶ୍ରୀଶ୍ରୀଧରସ୍ୟେତ୍ୟପି

ଉତ୍କଳ ଦେଶରେ ଏ ପର୍ଯ୍ୟନ୍ତ ବ୍ୟାସୋ ବେତ୍ତି ନବେତ୍ତିବା । ଶ୍ରୀଧରଂ ସକଳଂ ବେତ୍ତି ଏ ରୂପ ଯେ କମ୍ୱଦନ୍ତୀ ଚଳିକାଳ ବଦ୍ୱତ୍ ମଣ୍ଡଳୀରେ ପ୍ରସିଦ୍ଧି ଲାଭ କରିଅଛି, ତାହା କପିଳାସ ବାସୀ ଶ୍ରୀ ଶିଖରେଶ୍ୱର ସ୍ୱପ୍ନାଦେଶରେ ଉଚ୍ଚାରଣ କରିଥିଲେ ବୋଲି ଶୁଣାଯାଏ । ସମାନ୍ଵୟର ଏହି ଅଂଶରେ ସଂକଳୟିତା ତାହାର ସୂଚନା କରିଅଛନ୍ତି । ପୁଣି ଶ୍ରୀଧର ଯେ ଲକ୍ଷ୍ମୀ ନୃସିଂହ ବଗ୍ରହଙ୍କର ପ୍ରତିଷ୍ଠା କରାଇ ସେବା କରୁଥିଲେ ସେହି ମୂର୍ତ୍ତି ଏବେ ସୁଦ୍ଧା କପିଳାସ କ୍ଷେତ୍ରସ୍ଥ ପାଦଗିରି ମନ୍ଦିରରେ ଭକ୍ତମଣ୍ଡଳୀ ଦ୍ୱାରା ଆରାଧିତ ହୋଇ ଆସୁଅଛନ୍ତି । ପୁରୀର ଜଗନ୍ନାଥ ମନ୍ଦିରର ବେଢ଼ା ମଧ୍ୟରେ ଲକ୍ଷ୍ମୀଙ୍କ ମୋହନରେ ଯେ ଲକ୍ଷ୍ମୀ ନୃସିଂହ ବଗ୍ରହ ବରାଜିତ ଅଛନ୍ତି ସେହି ବଗ୍ରହ ସହିତ କପିଳାସସ୍ଥ ବଗ୍ରହଙ୍କର ସୌସାଦୃଶ୍ୟ ପରିଲକ୍ଷିତ ହୁଏ । ଏ ସମସ୍ତ କମ୍ୱଦନ୍ତୀ ଏବଂ ପ୍ରମାଣରୁ ଅନୁମିତ ହୁଏ ଯେ ଯେଉଁ ଦୁର୍ଲ୍ଲଭ ଗ୍ରନ୍ଥରାଜ ବର୍ତ୍ତମାନ ସଂସ୍କୃତ ସାହିତ୍ୟର ଦୁରୂହ ଶାସ୍ତ୍ରମାନଙ୍କର ମର୍ମୋଦ୍ଘାଟନ କର ପଣ୍ଡିତମଣ୍ଡଳୀଙ୍କର ନିତ୍ୟ କଣ୍ଠ ହାର ହୋଇଅଛି ତାହା କପିଳାସ କ୍ଷେତ୍ରରେ ଜନ୍ମ ପରିଗ୍ରହ କରିଥିଲା ।

× × ×

ପୂର୍ବ ଗଡ଼ଜାତ ସମୂହାନ୍ତର୍ଗତ ଢେଙ୍କାନାଳ ରାଜ୍ୟାଧୀଶ୍ୱର ଶ୍ରୀ ଶ୍ରୀ ରାଜା ଶଙ୍କର ପ୍ରତାପ ସିଂହଦେବ ମହେନ୍ଦ୍ର ବାହାଦୁରଙ୍କ ଆନୁକୂଲ୍ୟରେ ସେହି ରାଜ୍ୟର ଇତିବୃତ୍ତ ସଂଗ୍ରାହକ ପଣ୍ଡିତ ଶ୍ରୀ ନଗେନ୍ଦ୍ର ନାଥ ମହାପାତ୍ର ବଦ୍ୟାଳଙ୍କାରଙ୍କଠାରୁ ପ୍ରାପ୍ତ ।

ଶ୍ରୀଧର ସ୍ୱାମୀ ନବଧା ଭକ୍ତି ମଧ୍ୟରୁ ସ୍ମରଣକୁ ବାଛି ନେଇଥିଲେ । ତାଙ୍କର କର୍ମକ୍ଷେତ୍ର ପୁରୀ, କପିଳାସ, କାଞ୍ଚି ତିନ ସ୍ଥାନରେ ଆଭାସ ମିଳେ ।

ତନ୍ତ୍ରୋକ୍ତ ଏହି ୨୮ ଶ୍ଳୋକ ଶ୍ରୀ ନୃସିଂହ ସ୍ତୁତି ମଧ୍ୟରେ ଶ୍ରୀ ଜଗନ୍ନାଥ ଶ୍ରୀ ଶଙ୍କରଙ୍କର ନାମ ବହୁବାର ଦେଖାଯାଏ ଏହାହିଁ ପ୍ରମାଣ ଅଟେ । ସେ ସନ୍ନ୍ୟାସୀ ଥିଲେ ଓ ପରିବ୍ରାଜକ ନିଶ୍ଚୟ ହୋଇଥିବେ ।

ଭାରତର ଶେଷ ସ୍ୱାଧୀନ ସମ୍ରାଟ ହର୍ଷବର୍ଦ୍ଧନଙ୍କ ସ୍ୱର୍ଗାରୋହଣ ପରେ ନାଳନ୍ଦା ବିଦ୍ୟାପୀଠକୁ ରାଜକୀୟ ଦାନ ଧୀରେ ଧୀରେ କମିଯାଇଥିଲା । ଇତିହାସ ପ୍ରସିଦ୍ଧ ଇସଲାମ ରାଜତ୍ୱରେ ବାଦସାହ କୁତବଙ୍କର ସେନାପତି ବକ୍ତିଆର ଖାନ ବିହାର ଜୟ କରିଥିଲେ ଓ ନାଳନ୍ଦା ଲୁଣ୍ଠନ କରିଥିଲେ । ଅଧ୍ୟାପକମାନେ ପଳାୟନ କରିଥିଲେ । ନାଳନ୍ଦାର ଗୌରବ ସେଦିନୁ ଚାଲି ଯାଇଥିଲା । ପଳାତକ ଅଧ୍ୟାପକମାନେ ବିଭିନ୍ନ ରାଜ୍ୟରେ ଆଶ୍ରୟ ନେଇଥିଲେ । ବିଶେଷତଃ ଆର୍ଯ୍ୟାବର୍ତ୍ତ ଦାକ୍ଷିଣାତ୍ୟ ସନ୍ଧିରାଜ୍ୟ ଉତ୍କଳ ପ୍ରାନ୍ତ ଶକ୍ତିଶାଳୀ ଓ ସ୍ୱାଧୀନ ହିନ୍ଦୁ ରାଜ୍ୟ ଥିଲା । କେଶରୀ ବଂଶର ବିଲୋପ ପରେ ଗଙ୍ଗବଂଶ ପ୍ରତିଷ୍ଠାତା ପୁଣ୍ୟଶ୍ଳୋକ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱରେ ଶ୍ରୀ ରାମାନୁଜାଚାର୍ଯ୍ୟ ପୁରୀକୁ ଆସିଥିଲେ ଏବଂ ରହିଥିଲେ ବହୁତ ଦିନ ବା ବର୍ଷ । ସେ ବେଳରେ ଉତ୍ତର ଭାରତରୁ ବହୁ ଦାର୍ଶନିକ ପଣ୍ଡିତ ଚୋଡ଼ଗଙ୍ଗଙ୍କ ରାଜ ଦରବାରରେ ଆଶ୍ରୟ ଲାଭ କରିଥିଲେ ଓ ପ୍ରତିପୋଷଣ ହୋଇଥିଲେ । ଆର୍ଯ୍ୟାବର୍ତ୍ତର ସ୍ୱାଧୀନତା ଗଲା, ଶିକ୍ଷା ଆୟତନ ସଂସ୍କୃତି ଉଦ୍ଭବ କପଟର, ସମ୍ପୂର୍ଣ୍ଣ ହେଲେ ବନ୍ଦ୍ୟ । ଆକ୍ରମଣକାରୀ ଶାସକ ହେଲେ ଅବସ୍ଥା ଯାହା ହୁଏ ତାହା ହେଲା । ସେହି ବେଳରୁ ଅର୍ଥାତ୍ ଦ୍ୱାଦଶ ଖ୍ରୀଷ୍ଟାବ୍ଦ ଶେଷ ଭାଗ ବା ତ୍ରୟୋଦଶ ଶତାବ୍ଦୀର ପ୍ରଥମ ଭାଗରେ ପୁରୀ ଧାମରେ ବହୁ ବିବୁଧ ପଣ୍ଡିତ ଦାର୍ଶନିକମାନଙ୍କ ସମାବେଶରେ ଆଚାର୍ଯ୍ୟ ରାମାନୁଜଙ୍କର ଉପସ୍ଥିତି ଏକ ମଣି କାଞ୍ଚନର ସଂଯୋଗ କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳ ପ୍ରାନ୍ତରେ ଗଙ୍ଗବଂଶ ପ୍ରତିଷ୍ଠାତା ଚୋଡ଼ଗଙ୍ଗ ସୁଶାସକ ଥିଲେ । ଦାନୀ ଓ ଜ୍ଞାନୀ ଥିଲେ । ଗୁଣୀଜନମାନଙ୍କୁ ଉପଯୁକ୍ତ ସମ୍ମାନ ଦେଉଥିଲେ । ସେ ଦୀର୍ଘ ଦିନ ରାଜୁତି କରିଥିଲେ । ତାଙ୍କର ଦାନ ଧର୍ମ ପ୍ରଚୁର ଥିଲା ।

ବିଶେଷତଃ ଆଗନ୍ତୁକ ଅନ୍ୟ ପ୍ରାନ୍ତ ବିବୁଧମାନଙ୍କୁ ତାଙ୍କର ଯଥେଷ୍ଟ ଶ୍ରଦ୍ଧା ଥିଲା । ସେମାନଙ୍କର ରହିବା ପାଇଁ ବୃତ୍ତିଙ୍କ ପ୍ରଚୁର ଭତ୍ତା ଦେଇଥିଲେ । କେଶରୀ ବଂଶର ଶେଷ ଭାଗରେ ପ୍ରଜା ଅନ୍ତିଷ୍ଠ ଥିଲେ । ଧର୍ମରେ ବହୁତ ବ୍ୟତିକ୍ରମ ଘଟିଥିଲା । ବୌଦ୍ଧଧର୍ମ ତାହା ପୂର୍ବରୁ ଲୋପ ପାଇଥିଲା ବା ସଂସ୍କାର ରୂପରେ ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ର କରି ଶ୍ରୀ ଜଗନ୍ନାଥ ଧର୍ମରେ ରୂପାନ୍ତର ହୋଇଥିଲା ବା ଜଗନ୍ନାଥ ଧର୍ମରେ ବିଲୟ ହୋଇଥିଲା । ଏହି ସନ୍ଧି ଓ ଅନିଶ୍ଚିତ କାଳରେ ଶ୍ରୀ ରାମାନୁଜଙ୍କ ଆଗମନ ଓ ପୁରୀରେ ରହଣି ଓ ତାଙ୍କର ସିଦ୍ଧାନ୍ତ ମତ ପ୍ରଚାରର ଫଳ ଯୋଗେ ବହୁ ବୈଷ୍ଣବ ପ୍ରଧାନ ପୁରାଣ ଯଥା ଶ୍ରୀମଦ୍ ଭାଗବତ ବିଷ୍ଣୁ ପୁରାଣ ପ୍ରଭୃତିର ପୁନଃ ସଙ୍କଳନ ବା ପୂର୍ଣ୍ଣାଙ୍ଗ ଏହି ପୁରୀ ଧାମରେ ଘଟିଥିଲା । ଯେଉଁ ଭକ୍ତି ପାରାବାର ଶ୍ରୀମଦ୍ ଭାଗବତ ବୈଷ୍ଣବ ଜନ କଣ୍ଠହାର, ଯାହାର ଉଦାତ୍ତ ଉପଦେଶବାଣୀ ଯାବତ୍ ଚନ୍ଦ୍ର ଦିବାକର, ଯାବତ୍ ବିନ୍ଧ୍ୟ ହିମାଳୟ, ଯାବତ୍ ଭାରତ ଭାରତୀ ଯେତେଦିନ ପର୍ଯ୍ୟନ୍ତ ସଂସ୍କୃତ ଭାଷା ଓ ଭାରତୀୟ ପ୍ରାଦେଶିକ ଭାଷା ଜୀବିତ ଥିବ, ସେ କାଳ ପର୍ଯ୍ୟନ୍ତ ଯେ ପର୍ଯ୍ୟନ୍ତ ଜନ୍ମ ଜନମାନଙ୍କର ଆସ୍ତିକ ଭାବ ଥିବ, ସେତେକାଳ ତାର ମହତ୍ତ୍ୱ ଉଜ୍ଜ୍ୱଳ ରହିଥିବ ଏହି ସତ୍ୟର୍ଥ ଚିରନ୍ତନ ।

ପରମ ସତ୍ୟରୂପୀ ଶ୍ରୀ ନୃସିଂହ ଭଗବାନଙ୍କୁ ଶ୍ରୀଧର ସ୍ୱାମୀ ନିରନ୍ତର ହୃଦୟରେ ଭଜୁଥିଲେ ଏବଂ ତାଙ୍କ କୃପା ପ୍ରାପ୍ତ ହୋଇଥିଲେ । ଶ୍ରୀ ନୃସିଂହ-ଦେବ ଶ୍ରୀଧରଙ୍କୁ କେଉଁ ରୂପରେ ଦର୍ଶନ ଦେଇଥିଲେ ତାହା ଭାଗବତର ଟୀକା ଆରମ୍ଭରେ ପ୍ରଥମ ଶ୍ଳୋକରେ ଲିପିବଦ୍ଧ ।

ଶ୍ରୀମଦ୍ ଭାଗବତ ୧୦ମ ସ୍କନ୍ଧ ଉତ୍ତରାର୍ଦ୍ଧ ବା ଦ୍ୱାରିକା ଲୀଳାରେ ପ୍ରସିଦ୍ଧ ଶ୍ରୁତିଗୀତା ବା ବେଦସ୍ତୁତି ଅଧ୍ୟାୟ ସଂସ୍କୃତରେ ୮୭ ଅଧ୍ୟାୟ ଶ୍ରୀ ଭଗବାନ କୃଷ୍ଣଙ୍କର ଦ୍ୱାରିକା ଭୋଗର ଶେଷ ପର୍ଯ୍ୟାୟରେ ସନ୍ନିବେଶିତ ହୋଇଅଛି । ନରନାରାୟଣ ଋଷି ଆଶ୍ରମରେ ଉପସ୍ଥିତ ସନକାଦି ଆଦ୍ୟ ଋଷି ଚତୁଷ୍ଟୟଙ୍କ ମୁଖନିଃସୃତ ବେଦ ନିର୍ଯ୍ୟାସ ଉପନିଷଦର ଆଦର୍ଶବାଦ ଓ ଭାବନା ନାରଦ କହିଲେ ବାଦରାୟଣ ବ୍ୟାସଙ୍କୁ ବ୍ୟାସ କହିଲେ

ଶୁକଦେବଙ୍କୁ ଶୁକଦେବ ପରୀକ୍ଷିତଙ୍କୁ ଗଙ୍ଗାତୀରରେ ଯେତେବେଳେ କି ରାଜା ପରୀକ୍ଷିତ ପ୍ରାୟୋପବେଶନ କରିଥିଲେ (ମୁମୂର୍ଷୁ ଅବସ୍ଥା ପ୍ରାପ୍ତ) । ସେହି ୧୫୦ ଗୋଟି ଶ୍ଲୋକର ସାର ତତ୍ତ୍ୱ ଶ୍ରୀଧର ସ୍ୱାମୀ ତାଙ୍କର ସୁବୋଧିନୀ ଟୀକାରେ ନିଜର ଭାବନା ଓ ଆଦର୍ଶ ଭାଗବତ ଧର୍ମର ଗୂଢ଼ତତ୍ତ୍ୱ, ଭକ୍ତି ଧର୍ମର ସାରବସ୍ତୁ, ବେଦ ଉପନିଷଦର ସାରତତ୍ତ୍ୱ, ନିଜର ଅନୁଭୂତି ୨୮ ଗୋଟି ଶ୍ଳୋକରେ ଶ୍ରୀ ନୃସିଂହ ସ୍ତୁତିରେ ପ୍ରକାଶ କରିଛନ୍ତି ।

ଶ୍ରୀ ନୃସିଂହ-- ସିଂହ—ଶକ୍ତିର ପ୍ରତୀକ । ପୁରୁଷ ସିଂହ ଶକ୍ତିମାନ ପୁରୁଷଙ୍କର ବିଶେଷଣ ବହୁ ସ୍ଥାନରେ ଦେଖାଯାଏ ।

ପ୍ରଥମେ ତାଙ୍କର ସଂବୋଧନ—ହେ ଅଜିତ୍ ଅର୍ଥାତ୍ ଅପରାଜେୟ ମାନବ ଶ୍ରେଷ୍ଠ, ଯାହାର ମୁଖରେ ସରସ୍ୱତୀ ବକ୍ଷରେ ଲକ୍ଷ୍ମୀ ଓ ହୃଦୟରେ ସମ୍ବିତ୍ ବା ସତ୍ୟ ଏପରି ପରମାତ୍ମା ପରମ ସତ୍ୟରୂପୀ ଭଗବାନଙ୍କୁ ସେ ସର୍ବଦା ଭଜନ କରୁଥିଲେ । ତାଙ୍କୁ ସେ ପ୍ରତ୍ୟକ୍ଷ କରିଥିଲେ, ବର ଲାଭ କରିଥିଲେ, ସିଦ୍ଧ ହୋଇଥିଲେ । ତାହାଙ୍କୁ ମୋର ପ୍ରଣତି ।



## ଶ୍ରୀ ନୃସିଂହ ସ୍ତୁତି

ଶ୍ଲୋକ—(୧)

ଜୟ ଜୟାଜିତ ଜହ୍ୟଗ ଜଙ୍ଗମାବୃତ୍ତି
ମଜାମୁପମାନ ମୃଷା ଗୁଣାମ୍
ନହ୍ୱଲ୍ଭବନ୍ତ ମୃତେ ପ୍ରଭବନ୍ତ୍ୟମି
ନିଗମଁ ଗୀତ ଗୁଣାର୍ଣ୍ଣବ ତବ  । ୧ ।

ଅନ୍ୱୟ—ହେ ଅଜଜେୟ ଜୟ । ମୃଷାଗୁଣାନ୍ ଉପମାତ ଅଣ-ଜଙ୍ଗମା ବୃତ୍ତି ଇହ ଅଜାଂ ଜହି । ହି ମୃତେ ନଭବନ୍ତଂ ନ ପ୍ରଭବନ୍ତ୍ୟମି ତବ ଗୁଣାର୍ଣ୍ଣବତା ନିଗମ ଗୀତ । । ୧ ।

ପଦ୍ୟାର

ହେ ଅପରାଜେୟ ଆପଣଙ୍କ ଜୟ ହେଉ
ପୁନଃ ପୁନଃ କହେ ଆପଣଙ୍କ ଜୟ ହେଉ
ଏହି ମାୟା ମିଥ୍ୟାଗୁଣ କରିଣ ଧାରଣ
ଚରାଚର ଜୀବଗଣେ କରେ ଆଚ୍ଛାଦନ ।
କରି ଦିଅନ୍ତୁ ଆପଣ ମାୟାକୁ ବିନାଶ
ଆପଣଙ୍କ ବିନା ଅକିଂଚନ ଜୀବ ଶେଷ
ହେଉନାହିଁ କମ୍ଭା ପାରି ହୋଇ ପାରୁନାହିଁ
ଏହି ମାୟାରେ ସର୍ବଦା ଘାଣ୍ଟି ହେଉଥାଇ
ବେଦ ଏହି କଥାଗାନ ସର୍ବଦା କରୁଛି
ସର୍ବ ସଦ୍‌ଗୁଣ ଜଳଧି ଆପଣ ଅଟନ୍ତି । । ୧ ।

## ଶ୍ଳୋକ—(୨)

ଦ୍ରୁହିଣ ବହ୍ନି ରବିନ୍ଦ୍ର ମୁଖାମରା
ଜଗଦିଦଂ ନଭବେତ୍ ପୃଥଗୁତ୍ଥିତମ୍
ବହୁମୁଖୈରପି ମନ୍ତ୍ରଗଣୈ ରଜସ୍ତ୍ୱ
ମୁରୁ ମୂର୍ତ୍ତିରତୋ ବିନିଗଦ୍ୟତେ । । ୨ ।

ଅନ୍ୱୟ—ଦ୍ରୁହିଣ ବହ୍ନି ରବିନ୍ଦ୍ର ମୁଖାମରା ଇଦଂ ଉତ୍ଥିତଂ ଜଗତ୍ ପୃଥକ୍ ନଭବେତ୍ । ମନ୍ତ୍ରଗଣୈଃ ବହୁମୁଖୈଃ ଉରୁ ମୂର୍ତ୍ତି ବିନିଗଦ୍ୟତେ । ଅତଃ ତ୍ୱଂ ଅଜଃ । । ୨ ।

## ପଦ୍ୟାର

ବ୍ରହ୍ମା ଅଗ୍ନି ସୂର୍ଯ୍ୟ ଇନ୍ଦ୍ର ଦେବଗଣମାନେ
ଏବଂ ଏହି ଦୃଶ୍ୟମାନ ଜଗତ ପ୍ରମାଣେ
ଆପଣଙ୍କଠାରୁ କେବେ ପୃଥକ ନୁହନ୍ତି
କାରଣ ଅନେକ ଯାହା ଦେବଗଣ ପ୍ରତି-
ପାଦନ କରିଣ ଥିବା ଯେତେ ବେଦ ମନ୍ତ୍ର
ସେହି ଦେବଗଣଙ୍କ ନାମରେ ଅନ୍ୟ ମାତ୍ର ।
ଆପଣଙ୍କ ଭିନ୍ନ ଭିନ୍ନ ସ୍ୱରୂପ ବର୍ଣ୍ଣନ
କରିଣ ଅଛଇ କିନ୍ତୁ ଆଜନ୍ମ ଆପଣ
ଆପଣଙ୍କ ସେହି ବେଦ ବର୍ଣ୍ଣିତ ରୂପରେ
ଜନ୍ମ କେବେ ହୁଏନାହିଁ ସତ୍ୟ ସର୍ବକାଳେ । । ୨ ।

## ଶ୍ଳୋକ—(୩)

ସକଳ ବେଦଗଣେରିତ ସଦ୍‌ଗୁଣ
ସ୍ତ୍ୱ ମିତି ସର୍ବ ମନୀଷୀ ଜନାରତାଃ
ଇତ୍ୟପି ସୁଭଦ୍ର ଗୁଣ ଶ୍ରବଣାଦିଭିଃ
ତବ ପଦ ସ୍ମରଣେନ ଗତକ୍ଲମାଃ । । ୩ ।

ଶ୍ଳୋକ—(୩)

ଅନ୍ୱୟ—ତ୍ୱଂ ସଦ୍‌ଗୁଣୈଃ ସକଳ ବେଦଗଣୈଃଶ୍ଚ ଇଡ୍ଡ—ସର୍ବ ମନଷୀ ଜନାସ୍ତ୍ୱୟି ସୁଭଦ୍ର ଗୁଣ ଶ୍ରବଣାନ୍ତ୍ରଭିରତାଃ ତବ ପଦ ସ୍ମରଣେନ ଗତକ୍ଲମାଃ ।

ପଯ୍ୟାର

ଦେବ ! ସର୍ବବେଦ ଆପଣଙ୍କ ସଦଗୁଣ-
ମାନ କରୁଅଛନ୍ତି ଯେ ସର୍ବଦା ବର୍ଣ୍ଣନ
ସେଥିପାଇଁ ଏ ସୃଷ୍ଟିର ସମସ୍ତ ବଦ୍ୱାନ
ମଙ୍ଗଳମୟ କଲ୍ୟାଣକାରୀ ଯେ ଆପଣ
ଶ୍ରବଣ ସ୍ମରଣଦ୍ୱାରା ସେହି ଗୁଣମାନ
ଯୋଗେ ଆପଣଙ୍କୁ ପ୍ରେମ କରୁଥାନ୍ତି ଜାଣ
ଏବଂ ଆପଣଙ୍କ ପାଦ କରଣ ସ୍ମରଣ
ସମ୍ପୂର୍ଣ୍ଣ ଭବରେ ଦୁଃଖ ମୁକ୍ତ ହୋନ୍ତି ଜାଣ । । ୩ ।

ଶ୍ଳୋକ—(୪)

ନରବପୁ ପ୍ରତିପଦ୍ୟ ଯଦ୍ଦ ତ୍ୱୟି
ଶ୍ରବଣ ବର୍ଣ୍ଣନ ସ୍ମରଣାଦଭିଃ
ନରହରେ ନଭଜନ୍ତି ନୃଣାମିଦଂ
ଦୃତ ବଦୁଚ୍ଛ୍ୱସିତଂ ବଫଳଂ ତତଃ । । ୪ ।

ଅନ୍ୱୟ—ନରବପୁ ପ୍ରତିପଦ୍ୟ ଯଦ୍ଦ ତ୍ୱୟି ଶ୍ରବଣ ବର୍ଣ୍ଣନ ସ୍ମରଣା-ଦଭିଃ ନ ଭଜନ୍ତି । ଇଦଂ ନୃଣାଂ ତତଃ ଉଚ୍ଛ୍ୱସିତଂ ଦୃତବତ୍ ବଫଳଂ ; । ୪ ।

ପଯ୍ୟାର

ହେ ନରହରେ ମନୁଷ୍ୟ ଦେହଧାରୀ ଜୀବ
ଯଦ୍ଦ ଆପଣଙ୍କୁ ଶ୍ରବଣ ବର୍ଣ୍ଣନ ଭବ

ସତ୍ତ୍ୱେ ଚିତ୍ତ ସର୍ବଦା ସ୍ମରଣ ପ୍ରଭୃତିରେ
ଆପଣଙ୍କ ନାମକୁ ଯେ ଭଜନ ନ କରେ
ତେବେ ସେହି ଜୀବ ତାର ନାସାର ନିଃଶ୍ୱାସ
ନେବା ଭକ୍ଷଣ ସମାନ ବିଫଳ ପ୍ରୟାସ । ।୪।

ଶ୍ଳୋକ—(୫)

ଉଦରାଦିଷୁ ଯଃ ପୁଂସାଂ ଚିନ୍ତିତୋ ମୁନି ବର୍ତ୍ମଭିଃ
ହନ୍ତି ମୃତ୍ୟୁ ଭୟଂ ଦେବୋ ହୃଦ୍‌ଗତଂ ତମୁପାସ୍ମହେ ।୫।

ଅନ୍ୱୟ—ଯଃ ପୁଂସାଂ ମୁନିବର୍ତ୍ମଭିଃ ଉଦରାଦିଷୁ ଚିନ୍ତିତୋ ମୃତ୍ୟୁ ଭୟଂ ହନ୍ତି । ତଂ ଦେବଂ ହୃଦ୍‌ଗତଂ ଉପାସ୍ମହେ ।।୫।

ପୟାର

ଯେନରଗଣେ ମୁନିଋଷିଙ୍କ କଥିତରେ
ପଦ୍ଧତିରେ ଉଦରାଦି ସ୍ଥାନମାନଙ୍କରେ
ଚିନ୍ତା କରନ୍ତି ଯାହାକୁ ଏବଂ ସେହି ପ୍ରଭୁ
ସେହି ଜନମାନଙ୍କର ଚିନ୍ତନରେ ସବୁ
ସେମାନଙ୍କ ମୃତ୍ୟୁ ଭୟ କରନ୍ତି ବିନାଶ
ବିରାଜମାନ ସେ ପ୍ରଭୁ ମୋ ହୃଦୟ ଦେଶ
ତାହାଙ୍କୁ ମୁଁ ଉପାସନା ସର୍ବଦା କରୁଛି
ଆନ ଭାବନାକୁ ଦୂରେ ତେଜ ଦେଇଅଛି ।।୫।

ଶ୍ଳୋକ—(୬)

ସ୍ୱନିର୍ମିତେଷୁ କାର୍ଯ୍ୟେଷୁ ତାରତମ୍ୟ ବିବର୍ଜିତମ୍
ସର୍ବାନୁସ୍ୟୂତ ସନ୍ମାତ୍ରଂ ଭଗବନ୍ତଂ ଭଜାମହେ । ।୬।

ଅନ୍ୱୟ— ତାରତମ୍ୟ ବିବର୍ଜିତମ୍ ସ୍ୱ ନିର୍ମିତେଷୁ କାର୍ଯ୍ୟେଷୁ ସର୍ବାନୁସ୍ୟୂତ ସନ୍ ମାତ୍ରଂ ଭଗବନ୍ତଂ ଅହଂ ଭଜାମି ।।୬।

ପୟାର

ଜୀବଦ୍ୱାରା ନିର୍ମିତ ସଂପୂର୍ଣ୍ଣ ଯେ କାର୍ଯ୍ୟରେ
ଯେହେତୁ ନ୍ୟୂନାଧିକ ଶ୍ରେଷ୍ଠ କନିଷ୍ଠ ଭାବରେ
ସର୍ବ ପୂର୍ଣ୍ଣମୟ ସେହି ତତ୍ତ୍ୱର ସାଙ୍ଗରେ
ଅନୁଭବ ଆଣୁଥିବା ନିର୍ବିଶେଷ ସତ୍ତା—
ରେ ଯେ ଅବସ୍ଥିତ ନିଷ୍ଠିତ ସେ ମୋର କର୍ତ୍ତା
ସେ ଭଗବାନଙ୍କୁ ମୁଁ ଭଜନ କରୁଛି
ଅନ୍ୟସବୁ କାର୍ଯ୍ୟ ଦୂରେ ଏଡ଼ାଇ ଦେଇଛି ।।୬।

ଶ୍ଳୋକ—(୭)

ତ୍ୱଂ ଦଂ ଶସ୍ୟ ମଦେମଶାନନ୍ଦତ୍ୱନ୍ ମାୟାକୃତ ବନ୍ଧନମ୍
ତ୍ୱଦଙ୍ଘ୍ରି ସେବାମାଦିଶ୍ୟ ପରମାନନ୍ଦ ନିବର୍ତ୍ତୟ ।।୭।

ଅନ୍ୱୟ—ହେ ପରମାନନ୍ଦଇଶ-ମମତ୍ୱଂ ଅଂଶସ୍ୟ ତେଦଙ୍ଘ୍ରିଂ ସେବା ମାଦିଶ୍ୟ ତ୍ୱନ୍ ମାୟାକୃତ ବନ୍ଧନଂ ନିବର୍ତ୍ତୟ ।।୭।

ପୟାର

ଆହେ ପରମାନନ୍ଦ ସ୍ୱରୂପ ସ୍ୱାମୀ ମୋର
ମୁହିଁ ଆପଣଙ୍କ ଅଂଶ ମୋତେ ଶ୍ରୀ ପୟୂର
ଆପଣଙ୍କ ସେବା କରିବାକୁ ଅନୁମତି
ଦେଇ ମାୟା ବନ୍ଧନରୁ କରନ୍ତୁ ମୁକତି ।।୭।

ଶ୍ଳୋକ—(୮)

ତ୍ୱତ୍ କଥାମୃତ ପାଥୋଧୌ ବିହାରନ୍ତୋ ମହାମୁଦଂ
କୁର୍ବନ୍ତି କୃତିନଃ କେଚିତ୍ ଚତୁର୍ବର୍ଗେ ତୃଣୋପମମ୍ ।

ଅନ୍ୱୟ--କେଚିତ୍ କୃତିନଃତ୍ୱତ୍ କଥାମୃତ ପାଥୋଧୌ ମହାମୁଦଂ ବିହରନ୍ତୋ ଚତୁର୍ବର୍ଗେ ତୃଣୋପମଂ କୁର୍ବନ୍ତି ।।୮।

ପଦ୍ୟାର

କ୍ୱଚିତ୍ ବିରଳ ସୁଦ୍ଧାନ୍ତଃ କରଣ ପ୍ରବୀଣ
ସେ ମହାପୁରୁଷ ତବ ଅମୃତ ବଚନ
ସମୁଦ୍ରେ କରି ବିହାର ପରମାନନ୍ଦରେ
ମଗ୍ନ ହୋଇଥାନ୍ତି ହବା ଜଣି ନରନ୍ତରେ
ଧର୍ମ ଅର୍ଥ କାମ ମୋକ୍ଷ ଆଦି ଚତୁଃବର୍ଗ
ମଣନ୍ତି ତୃଣରୁ ହୀନ ପୁରୁଷାର୍ଥଭବ ।। ୮ ।

ଶ୍ଳୋକ—(୯)

ତ୍ୱୟ୍ୟାତ୍ମନ ଜଗନ୍ନାଥେ ମନ୍ମନୋ ରମତାମିହ
କଦାମମେ ଦୃଶଂ ଜନ୍ମ ମାନୁଷଂ ସମ୍ଭବିଷ୍ୟତି ।। ୯ ।

ଅନ୍ୱୟ—ହେ ଜଗନ୍ନାଥେ ! ତ୍ୱୟି ଆତ୍ମନ ଇହ ମନ୍ମନୋ ରମତାମ୍ । କଦା ମମ ଇଦୃଶଂ ମାନୁଷଂ ଜନ୍ମ ସମ୍ଭବିଷ୍ୟତି ।

ପଦ୍ୟାର

ଆପଣ ଅଟନ୍ତି ପର ଏ ଜଗତ ନାଥ
ମୋହର ଆତ୍ମା ଅଟନ୍ତି ସତତ ମହତ
ଆପଣଙ୍କଠାରେ ଏହି ଜୀବନରେ ମନ
ମୋର ରମିଯାଉ ମୋର ତୁମ୍ଭେ ଜୀବଧନ
ଏପରି ସୌଭାଗ୍ୟ କେବେ ହୋଇବ ମୋହର
ଏ ପ୍ରକାରେ ନର ଜନ୍ମ ହୋଇବ ଆବର ।। ୯ ।

ଶ୍ଳୋକ—(୧୦)

ଚରଣ ସ୍ମରଣ ପ୍ରେମ୍ଣା ତବ ଦେବ ସୁଦୁର୍ଲ୍ଲଭମ୍
ଯଥା କଥଞ୍ଚିତ୍ ନୃହରେ ମମଭୂୟା ଦହନିଶମ୍ ।। ୧୦ ।

ଅନ୍ୱୟ—ହେ ଦେବ ! ତବ ଚରଣ ପ୍ରେମ୍ଣା ସ୍ମରଣଂ ସୁଦୁର୍ଲ୍ଲଭମ୍ । ମମ ଯଥା କଥଞ୍ଚିତ୍ ନହରେ ଅହର୍ନିଶଂ ଭୂୟାତ୍ ।। ୧୦ ।

ପୟାର

ଆପଣଙ୍କ ଚରଣକୁ ପ୍ରେମପୂର୍ଣ୍ଣ ଭାବେ
ସ୍ମରଣ ଅତି ଦୁର୍ଲଭ ହେ ଦେବ ମୁଁ ଭାବେ
ମୋର ମନ ଯେନକେନ ପ୍ରକାରରେ ହେଉ
ହେ ନୃସିଂହ ଦବା ନିଶି ଏହି ଭାବ ରହୁ । । ୧୦ ।

ଶ୍ଳୋକ—(୧୧)

କ୍ୱାହଂ ବୁଦ୍ଧ୍ୟାଦି ସଂରୁଦ୍ଧଃ କ୍ୱଚ ଭୂମନ୍ ମହସ୍ତବ
ଦୀନବନ୍ଧୋ ଦୟାସିନ୍ଧୋ ଭକ୍ତି ମେ ନୃହରେ ଦଶ । । ୧୧ ।

ଅନ୍ୱୟ—ବୁଦ୍ଧ୍ୟାଦି ସଂରୁଦ୍ଧଃ ଅହଂ କ୍ୱଚ ମହସ୍ତବ ଭୂମନ୍ଚକ୍ୱ । ହେ ନୃହରେ ଦୀନବନ୍ଧୋ ଦୟାସିନ୍ଧୋ ମେ ଭକ୍ତିଂ ଦଶ । । ୧୧ ।

ପୟାର

ହେ ଅନନ୍ତ ବୁଦ୍ଧି ଆଦି ପରିଚ୍ଛିନ୍ନ ହୋଇ
ଉପାଧିରେ ଆବୃତ୍ତ ମୁଁ କେଉଁଠାରେ ଥାଇ
ବାକ୍ ମନ ଅଗୋଚର ଆପଣଙ୍କ ରୂପ
କେଉଁଠି ଜାଣିବା ବହୁ କଠିନ ସ୍ୱରୂପ
ଏଣୁ ଦୀନବନ୍ଧୋ ଦୟାସିନ୍ଧୋ ନରହରି
ମୋତେ ଆପଣଙ୍କ ଭକ୍ତି ଦିଅନ୍ତୁ ଆଦରି । । ୧୧ ।

ଶ୍ଳୋକ—(୧୨)

ମିଥ୍ୟା ତର୍କସୁ କର୍କଶେରିତ ମହାବାଦାନ୍ଧକାରାନ୍ତରେ
ଭ୍ରାମ୍ୟନ୍ ମନ୍ଦମତେରମନ୍ଦ ମହିମଂ ତ୍ୱ ଜ୍ଞାନ ବର୍ତ୍ମାସ୍ଫୁଟମ୍
ଶ୍ରୀମନ୍ ମାଧବ ବାମନ ତ୍ରିନୟନ ଶ୍ରୀ ଶଙ୍କର ଶ୍ରୀପତେ
ଗୋବିନ୍ଦେତି ମୁଦା ବଦନ୍ ମଧୁପତେ ମୁକ୍ତଃକଦାସ୍ୟାମହମ୍ । ।୧୨।

ଅନ୍ୱୟ—ମନ୍ଦମତେଃ ମିଥ୍ୟା ତର୍କସୁ କର୍କଶେରିତ ମହାମଦାନ୍ଧକାରନ୍ତରେ ଭ୍ରାମ୍ୟନ୍ ତ୍ୱଂ ଅମନ୍ଦ ମହିମଂ ଜ୍ଞାନବର୍ତ୍ମା ସ୍ଫୁଟମ୍ ନହି ।

ଶ୍ରୀମନ୍ ମାଧବ ଅନ୍ତଂ କଦା ବାମନ ତ୍ରିନୟନ ଶ୍ରୀ ଶଙ୍କର ଶ୍ରୀପତେ
ଗୋବିନ୍ଦଂ ଇତି ମୁଦାବଦନ୍ ମୁକ୍ତସ୍ୟାଂ ।।୧୨।

ପଦ୍ୟାର

ଅନନ୍ତ ମହିମାଶାଳୀ ଆହେ ପ୍ରଭୁ ମୋର
ଯେଉଁ ମନ୍ଦମତି ମିଥ୍ୟା ତର୍କ ସାହାଯ୍ୟର
ଅତି କର୍କଶ ବିବାଦବାଦ ଭୟଙ୍କର
ଭ୍ରମୁଛନ୍ତି ଅନ୍ଧକାରେ ସେହି ମାନଙ୍କର
ଆପଣଙ୍କର ମହିମାନ୍ଵିତ ଯେ ସୁନ୍ଦର
ନହୁଅ ଇଙ୍ଗନ ମାର୍ଗ ସମ୍ଭବ ଗୋଚର ।
ଏଣୁ ମୋର ଜୀବନରେ ସୌଭାଗ୍ୟ ମୁହୂର୍ତ୍ତ
କେବେ ଆସିବ ଶ୍ରୀମନ୍ ମାଧବ ମହତ
ହେ ବାମନ ତ୍ରିଲୋଚନ ଶ୍ରୀ ଶଙ୍କର ଦେବ
ଶ୍ରୀପତେ ଗୋବିନ୍ଦ ମଧୁପତେ ଇଷ୍ଟଦେବ
ନାମ ଆନନ୍ଦରେ ମୁକ୍ତ ହେବ ଭବ ।।୧୨।

ଶ୍ଳୋକ—(୧୩)

ସତ୍ ସଲ୍ଲତଃ ସଦାଭାତି ଜଗଦେତ ଦସତ୍ ସ୍ୱତଃ
ସଦାଭାସ ମସତ୍ୟସ୍ମିନ୍ ଭଗବନ୍ତଂ ଭଜାମହେ ।।୧୩।

ଅନ୍ୱୟ—ଏତତ୍ ଜଗତ୍ ସ୍ୱତଃ ଅସତ୍ ସଦାଭାତି ଅସ୍ମିନ୍ ସଦାଭାସ ଅସତ୍ୟଂ ସତ୍ ସଲ୍ଲତଃ ତଂ ଭଗବନ୍ତ ଭଜାମ ।

ପଦ୍ୟାର

ଅଟଇ ଆପଣଙ୍କ ସ୍ୱରୂପ ଏ ଜଗତ
ନାମ ଓ ଆକୃତି ରୂପେ ଅଟଇ ଅସତ୍ୟ ।
ପୁଣି କେଉଁ ଅଧିଷ୍ଠାନ ସତ୍ତାରେ ଯେ ସତ୍ୟ
ଜଣା ପଡୁ ଅଛୁ ପୁଣି ଯେ ଏହି ଅସତ୍ୟ

ମାୟାରେ ସତ୍ୟ ରୂପେ ସଦା ପ୍ରକାଶ ମାନ
ହୋଇ ଅଛି ଏଣୁ ସେହି ପ୍ରଭୁ ଭଗବାନ
ଦର୍ଶୟିତ୍ରୋ ନାମ କରୁଅଛି ମୁଁ ଭଜନ । । ୧୩ ।

ଶ୍ଳୋକ—(୧୪)

ତପନ୍ତୁ ତାପୈଃ ପ୍ରପତନ୍ତୁ ପର୍ବତା-ଦଟନ୍ତୁ ତୀର୍ଥାନ ପଠନ୍ତୁ ଚାଗମାନ୍
ଯଜନ୍ତୁ ଯାଗୈଃ ବିବଦନ୍ତୁ ବାଦୈଃ—
ହରିଂ ବିନାନୈବ ମୃତିଂ ତରନ୍ତି । । ୧୪ ।

ଅନ୍ୱୟ—ତାପୈଃ ତପନ୍ତୁ ପର୍ବତାତ୍ ପ୍ରପତନ୍ତୁ ତୀର୍ଥାନ ଅଟନ୍ତୁ ଚାଗମାନ୍ ପଠନ୍ତୁ ଯାଗୈଃ ଯଜନ୍ତୁ ବାଦୈଃ ବିବଦନ୍ତୁ ଏବ ହରିବିନା ମୃତିଂ ନ ତରନ୍ତି । । ୧୪ ।

ପୟାର

ଯୋଗୀ ମାନବ ଦାବାଗ୍ନି ତାପରେ ତପତ
ହୋଇ କମ୍ବା ଆତ୍ମଘାତ୍ତ ଡେଇଁଣ ପର୍ବତ
ବେଦ ପାଠ କରୁ ନାନା ତୀର୍ଥ ପର୍ଯ୍ୟଟନ
କରୁ କମ୍ବା ପ୍ରତି ଦିନ ଯଜ୍ଞରେ ଯଜନ ।
ଆପୋଷେ ବିବାଦ କରୁ ଭିନ୍ନ ମତବାଦ
କିନ୍ତୁ ଏହି ମୃତ୍ୟୁମୟ ସଂସାର ବିପଦ
ସାଗର ସେହି ଭଗବାନଙ୍କ ବିନା ଜାଣ
ପାର ହୋଇପାରେ ନାହିଁ ଏକଥା ପ୍ରମାଣ । । ୧୪ ।

ଶ୍ଳୋକ—(୧୫)

ଅଣ୍ଡାନ୍ତ୍ୟୋଽପି ଯୋ ଦେବଃ ସର୍ବ କାରକ ଶକ୍ତିଧୃକ୍
ସର୍ବଜ୍ଞଃ ସର୍ବ କର୍ତ୍ତା ଚ-ସର୍ବ ସେବ୍ୟଂ ନମାମି ତମ୍ । । ୧୫ ।

ଅନ୍ୱୟ—ଯଃ ଦେବଃ ଅଣ୍ଡାନ୍ତ୍ୟୋଽପି ସର୍ବ କାରକ ଶକ୍ତିଧୃକ୍ ସର୍ବଜ୍ଞଃ ସର୍ବ କର୍ତ୍ତା ସର୍ବ ସେବ୍ୟଂ ତଂ ନମାମି । । ୧୫ ।

ପୟାର

ହେଲେ ସୁଦ୍ଧା ଯେଉଁ ପ୍ରଭୁ ଇନ୍ଦ୍ରିୟ ରହିତ
ଆନ୍ତରିକ ବାହ୍ୟ ଇନ୍ଦ୍ରିୟ ମାନଙ୍କ ସମସ୍ତ
ଧାରଣ କରୁ ଅଛନ୍ତି ସମସ୍ତ ଶକତି
ଆହୁରି ସେ ସର୍ବକର୍ତ୍ତା ସର୍ବଜ୍ଞ ଅଟନ୍ତି ।
ସେହି ସର୍ବସେବନୀୟ ମହାପ୍ରଭୁ ମୋର
ନମସ୍କାର କରୁଅଛି ତାଙ୍କୁ ନିରନ୍ତର । । ୧୫ ।

ଶ୍ଳୋକ—(୧୬)

ଭୂଯାକ୍ଷଣ ବଣକ୍ଷୋଭ ମାୟାବୋଧିତ କର୍ମଭିଃ
ଜାତାନ୍ ସଂସରତଃ ଖିନ୍ନାନ୍ ନୃହରେ ପାହିନ ପିତଃ । ୧୬ ।

ଅନ୍ୱୟ ନୃହରେ ଭୂତ୍ ଇକ୍ଷଣବଶକ୍ଷୋଭ ମାୟା ବୋଧିତ କର୍ମଭିଃ ଜାତାନ୍ ଖିନ୍ନାନ୍ ସଂସରତଃ ପିତଃ ନଃ ପାହି । । ୧୬ ।

ପୟାର

ହେ ନରହରି ଆପଣ ସୃଷ୍ଟି ସଂକଳ୍ପରେ
କ୍ଷୁବ୍ଧ ହୋଇ କର୍ମକୁ ଜାଗ୍ରତ ଏ ମାୟାରେ ।
କରାଇ ଅଛନ୍ତି ଏହି କାରଣରୁ ମୋର
ଜନ୍ମ ହୋଇଅଛି ଧରା ଧାମର ଉପର ।
ସେହି ଆଗମନ ପ୍ରତ୍ୟାଗମନ ଚକ୍ରରେ
ପଡି ମୁଁ ବିଶେଷ ଦୁଃଖି ହେଉଛି ସତ୍ତ୍ୱରେ
ନଷ୍ଟେ ଜାଣ ଆହେ ପିତଃ ମୋତେ ରକ୍ଷାକର
ନାହିଁ ଆନ ମୋ ଭରସା ଯୋଡ଼ୁ ଅଛି କର । । ୧୬ ।

ଶ୍ଳୋକ—(୧୭)

ଅନ୍ତର୍ଯନ୍ତାସର୍ବ ଲୋକସ୍ୟ ଗୀତଂ
ଇତ୍ୟା ଯୁକ୍ତ୍ୟାଚୈକ ମେବାବସେୟଃ

ଯଦଃ ସର୍ବଜ୍ଞଃ ସର୍ବ ଶକ୍ତି ନୃସିଂହଃ
ଶ୍ରୀମନ୍ତଂ ତଂ ଚେତ୍ ସେବାବଲମ୍ବେ । । ୧୭ ।

ଅନ୍ୱୟ—ଶ୍ରୁତ୍ୟା ସର୍ବ ଲୋକସ୍ୟ ଅନ୍ତର୍ଯନ୍ତା ଗୀତଃ ଚଏବ ଯୁକ୍ତ୍ୟା ଏବାକଟସଦୃଃ । ଯଃ ସର୍ବଜ୍ଞଃ ସର୍ବ ଶକ୍ତି ନୃସିଂହଃ ଶ୍ରୀମନ୍ତଂ ଏଚେତ୍ ତଂ ସେବାବଲମ୍ବେ । । ୧୭ ।

ପଦ୍ୟାର

ପ୍ରପଞ୍ଚ ସମସ୍ତ ଦୃଶ୍ୟ ହୁଏ ଯେ ବେଦରେ
ଅଥବା ଅନ୍ତର୍ଯ୍ୟାମୀ ରୂପରେ ଜଗତରେ
ଯାହାର ଗାନ କରା ହେଉଛି ଯୁକ୍ତିରେ
ଏହା ନଶ୍ବର ହୋଇଛି ଯାହା ସର୍ବଠାରେ
ସେ ସର୍ବଜ୍ଞ ସର୍ବ ଶକ୍ତିମାନ ସେ ନୃସିଂହ
ପୁରୁଷୋତ୍ତମ ଅନନ୍ତ ନ ଅଛି ସନ୍ଦେହ
ପ୍ରଭୁ ସେହ୍ନ ସର୍ବ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟ ନିଧି
ତାଙ୍କୁ ମୁଁ ଅନ୍ତର ମନେ ଆଶ୍ରା କରିବଧି । । ୧୭ ।

ଶ୍ଳୋକ—(୧୮)

ଯସ୍ମିନ୍ନୁଦ୍ୟବ୍ୟପ୍ତ ଦଲସ୍ଥୃ ମପିଯତ୍
ଭାତ ବର୍ଣ୍ଣଂ ଲପ୍ଯାଦୌ
ଜବୋ ଯେତ ଗୁରୁ କରୁଣୟା କେବଲାତ୍ମା ବବୋଧେ
ଅତ୍ୟନ୍ତାନ୍ତଂ ବ୍ରଜତ ସହସା ସିନ୍ଧୁବତ୍ ସିନ୍ଧୁ ମଧ୍ୟେ
ମଧ୍ୟେ ଚିତ୍ତଂ ତ୍ରିଭୁବନ ଗୁରୁ ଭାବୟେତଂ ନୃସିଂହମ୍ । । ୧୮ ।

ଅନ୍ୱୟ - ଯସ୍ମିନ୍ ଉଦ୍ୟତ୍ ଉପେତ ଜଗତ୍ ବର୍ଣ୍ଣଂ ଭାତ ଯତ୍ ଲପ୍ଯାଦୌ ଅପିବିଲସ୍ୟଂ । ଗୁରୁ କରୁଣୟା ଆତ୍ମବୋଧେ କେବଳଂ ସିନ୍ଧୁବତ୍ ସିନ୍ଧୁ ମଧ୍ୟେ ସହସା ଅତ୍ୟନ୍ତାନ୍ତଂ ବ୍ରଜତ ତଂ ମଧ୍ୟେ ଚିତ୍ତଂ ତ୍ରିଭୁବନ ଗୁରୁ ନୃସିଂହଂ ଭାବୟେ । । ୧୮ ।

## ପୟାର

ଜୀବ ସତ୍ତ୍ୱ ସମ୍ପୂର୍ଣ୍ଣ ଯାହାର ଉଦୟରେ
ବଶ୍ୱ ବକାଶ ହେଉଛି ପୁନଃ ସୁଷୁପ୍ତିରେ
ବିଲୟ ଘଟନ୍ତି ଏହି କ୍ରମ ଅବସ୍ଥାରେ
ଚାଉଅଛି ବକର୍ତ୍ତିନ ଶୋଭା କରନ୍ତରେ ।
ଲଭି ଗୁରୁଦେବ କୃପା ଯେବେ ଆତ୍ମଜ୍ଞାନ
ଶୁଦ୍ଧି ଲଭି ହୁଏ ନିଜ ଅନ୍ତରେ ପ୍ରମାଣ
ତେବେ ଦେଖ ସିନ୍ଧୁ ଆଦି ନଦୀ ସମୁଦ୍ରରେ
ବିଲୟ ସମ ସହସା ଏହି ଜୀବନରେ
ହୋଇଯାଉଛି ପ୍ରଳୟ ଆତ୍ୟନ୍ତିକ ଭାବେ
ତେଣୁ ତ୍ରିଭୁବନ ଗୁରୁ ଶ୍ରୀ ନୃସିଂହ ଦେବେ
ଭଗବାନଙ୍କୁ ମୁଁ ନିଜ ହୃଦୟରେ ଜାଣ
ଭାବନା କରୁ ଅଛି ମୁହିଁ ନଶିଦନ । । ୧୮ ।

## ଶ୍ଳୋକ—(୧୯)

ସଂସାର ଚକ୍ରକ୍ରକଚୈଃ ବଦାର୍ଣ୍ଣ
ମୁଦାର୍ଣ୍ଣ ନାନା ଭବ ତାପତପ୍ତମ୍
କଥଞ୍ଚିଦାପନ୍ନ ମିହ ପ୍ରପନ୍ନଂ
ତ୍ୱ ମୁଦ୍ଧର ଶ୍ରୀ ନୃହରେ ନୃଲୋକମ୍ । । ୧୯ ।

ଅନ୍ୱୟ— ଶ୍ରୀ ନୃହରେ ! ସଂସାର ଚକ୍ର କ୍ରକଚୈଃ ବଦାର୍ଣ୍ଣଂ ନାନା ଭବତାପ ତପ୍ତଂ ପ୍ରପନ୍ନଂ ଇହ ଆପନ୍ନଂ କଥଞ୍ଚିତ ଉଦାର୍ଣ୍ଣଂ ନୃଲୋକଂ ତ୍ୱଂ ଉଦ୍ଧର । । ୧୯ ।

## ପୟାର

ହେ ନୃସିଂହ ଏହି ଜୀବ ଏ ସଂସାର ମଧ୍ୟରେ
ଚକ୍ର ଘୂର୍ଣ୍ଣନରେ ପେଷି ହୋଇ ନରନ୍ତରେ
କେଶ ପ୍ରାୟ ଟିକି ଟିକି ହେଉଅଛି ଜାଣ

ନ ରହୁଛି ତାର ସତ୍ତ୍ୱା ଘଷଣ କଷଣ
ଆହୁରି ନାନା ପ୍ରକାର ସାଂସାରିକ ଘୋର
ଉତ୍ତପ୍ତ ପାପ ତାପରେ ଦଗ୍ଧି ହୋଇବାର
ଏ ଅପତ୍ତିକାଶ୍ୱ ଜୀବ କୌଣସି ପ୍ରକାରେ
ଆପଣଙ୍କ ଦୟାବଳେ ଆପଣଙ୍କ ଠାରେ
ଶରଣକୁ ଆସିଅଛି ଏ ଧନେ ଆପଣ
ଉଦ୍ଧାର କରନ୍ତୁ ମୋର ଏହି ନିବେଦନ । ।୧୯।

ଶ୍ଳୋକ—(୨୦)

ଯଦା ପର୍‌ନନ୍ଦ ଗୁରେ ଭବତ୍‌ପଦେ ପଦଂ ମନୋମେ
ଭବବତ୍‌ ଲଭେତ
ତଦା ନିରସ୍ତାଖିଳ ସାଧନଶ୍ରମ
ଶ୍ରୟୈବ ସୌଖ୍ୟଂ ଭବତଃ କୃପାତଃ ।୨୦।

ଅନ୍ୱୟ—ହେ ପରାନନ୍ଦଗୁରେ ଭଗବତ୍‌ ଯଦାମେ ମନଃ ଭବତ୍‌ ପଦେ ପଦଂ ଲଭେତ୍‌ । ତଦା ଭବତଃ କୃପାତଃ ଅଖିଳ ଶ୍ରମଃ ଶ୍ରୟୈବ-ସୌଖ୍ୟଂ ନିରସ୍ତାତ୍‌ । ।୨୦।

ପୟାର

ହେ ପରମାନନ୍ଦମୟ ଗୁରୁ ଭଗବାନ
ଆପଣଙ୍କ ପାଦେ ଯେବେ ଆଶ୍ରୟ ମୋ ମନ ।
ଆଶ୍ରା କରି ନେବ ଆପଣଙ୍କ ଶ୍ରୀ ଚରଣ
ତବ କୃପାବଳେ ତେବେ ସମଗ୍ର ସାଧନ ।
ପରିଶ୍ରମ ଫଳ ପାଇ ଲଭ ମୁଁ କରିବି
ନିର୍ଭୟେ ପରମାନନ୍ଦେ ଆଶ୍ରା କରିଥିବି ।
ପରମ ଆନନ୍ଦ ତବ ଯୁଗଳ ପୟର
ହେ ଆନନ୍ଦମୟ ଯୋଗୀ ଜନ ଅଗୋଚର ।

ଶ୍ଳୋକ—(୨୧)

ଭଜତାଂ (ତୋ) ତ୍ୱଭବାନ୍ ସାକ୍ଷାତ୍
ପରମାନନ୍ଦ ଚିଦ୍ ଘନଃ
ଆତ୍ମୈବ କିମତଃ କୃତ୍ୟଂ
ତୁଚ୍ଛ ଦାର ସୁତାଦିଭିଃ । । ୨୧ ।

ଅନ୍ୱୟ—ତ୍ୱ ଭବାନ୍ ଭଜତାଂ ସାକ୍ଷାତ୍ ପରମାନନ୍ଦ ଚିଦ୍ ଘନଃ ଅତଃ ଆତ୍ମୈବ ତୁଚ୍ଛ ଦାର ସୁତାଦିଭିଃ କିଂ କୃତ୍ୟଂ । । ୨୧ ।

ପଦ୍ୟର

ସ୍ୱୟଂ ସାକ୍ଷାତ୍ ଚିଦ୍ ଘନ ଅଟନ୍ତି ଆପଣ
ପରମାନନ୍ଦ ତେଣୁ ଯେ ତୁମ୍ଭଙ୍କୁ ଭଜନ
କରୁଅଛି ନିଜ ଆତ୍ମା ତୁଚ୍ଛ ଅଟେ ତାର
ସ୍ତ୍ରୀ ପୁତ୍ର ଧନ କିସ ପ୍ରୟୋଜନ ତାର । । ୨୧ ।

ଶ୍ଳୋକ—(୨୨)

ମୁଞ୍ଚନ୍ନଙ୍ଗ ତଦଙ୍ଗ ସଙ୍ଗ ମନିଶଂ
ତ୍ୱାମେବ ସଞ୍ଚିନ୍ତୟନ୍
ସନ୍ତଃ ସନ୍ତି ଯତୋ ଯତୋ ଗତମଦା
ସ୍ତାନ ଶ୍ରମାନା ବସନ୍ ।
ନିତ୍ୟଂ ତନ୍ ମୁଖ ପଙ୍କଜାତ୍
ବିଗଳିତ ତ୍ୱତ୍ ପୁଣ୍ୟଗାଥାମୃତ ।
ସ୍ରୋତ ସଂପ୍ଲବ ସମ୍ପ୍ଲୁତୋ ନରହରେ
ନସ୍ୟା ମହଂ ଦେହଭୃତ୍ । । ୨୨ ।

ଅନ୍ୱୟ—ଅଙ୍ଗ ତଦଙ୍ଗ ସଙ୍ଗ ମୁଞ୍ଚନ୍ ଅନିଶଂ ତ୍ୱାଂ ଏବ ସଂଚିନ୍ତୟନ୍ ଯତୋ ଯତୋ ଗତମଦା ସନ୍ତଃ ସନ୍ତି ତାନ୍ ଆଶ୍ରମାନ୍ ଅବସନ୍ ତନ୍ ମୁଖ ପଙ୍କଜାତ୍ ବିଗଳିତ ତ୍ୱତ୍ ପୁଣ୍ୟ ଗାଥାମୃତଂ ସ୍ରୋତଃ ନିତ୍ୟଂ ସଂପ୍ଲୁତଃ ନରହରେ ! ଅହଂ ଦେହଭୃତ ନସ୍ୟାଂ । । ୨୨ ।

## ପୟାର

ହେ ନୃସିଂହ ମୋ ଶରୀର ସେହି ସମ୍ବନ୍ଧରେ
ଯେ ଆସକ୍ତି ପରିତ୍ୟାଗ କରି ଆନନ୍ଦରେ
ଦିବା ନିଶି ଆପଣଙ୍କୁ ଚିନ୍ତନ କରିବ
ଆହୁରି ଏପରି ସ୍ଥାନ ଖୋଜି ମୁହିଁ ଯିବ ।
ନିର ଅଭିମାନୀ ସନ୍ଥ ନିବାସ କରନ୍ତି
ସେହି ଆଶ୍ରମରେ ଯାଇ କରିବି ବସତି ।
ସେହି ସନ୍ଥ ମାନଙ୍କର ଶ୍ରୀ ମୁଖ କମଳ
ନିସୃତ ସେ ପୁଣ୍ୟମୟୀ ତବ କଥାମୃତ
ନଦୀ ଧାରେ ପ୍ରତିଦିନ ସ୍ନାନ କରୁଥିବି
ଦେହ ବନ୍ଧନେ ମୁଁ ପୁନର୍ବାର ନ ପଡ଼ିବି ।। ୨୨ ।

### ଶ୍ଳୋକ—(୨୩)

ଉଦ୍ଭୂତଂ ଭବତଃ ସତୋଽପି ଭୁବନଂ
ସନ୍ନୈବ ସର୍ପଃସ୍ରଜଃ ।
କୁର୍ବାନ୍ କାର୍ଯ୍ୟ ମପିହ କୂଟ କନକଂ
ବେଦୋଽପି ନୈବଂ ପରଃ
ଅଦ୍ୱୈତଂ ତବ ସତ୍ ପରଂତ୍ୱ ପରମା—
ନନ୍ଦ ପଦଂ ତନ୍ମୁଦା
ବନ୍ଦେ ସୁନ୍ଦର ମିନ୍ଦିରା ନୁତ ହରେ
ମାମୁଞ୍ଚ ମାମାନତମ୍ ।। ୨୩ ।

ଅନ୍ୱୟ—ସ୍ରଜ ସନ୍ ସର୍ପ ଏବ ଭବତଃ ଉଦ୍ଭୂତଂ ଅପି ଭୁବନଂ ସତଃ ନ । କୂଟ କନକଂ ଅପି ଇହ କାର୍ଯ୍ୟଂ କୁର୍ବନ୍ତି ଏବଂ ବେଦୋଽପି ନ । ପରନ୍ତୁ ତବ ସତ୍ ପରମାନନ୍ଦ ଅଦ୍ୱୈତ ସୁନ୍ଦର ପଦଂ ହେ ଇନ୍ଦିରା ପତି ନୁତ ହରେ ତନ୍ମୁଦା ବନ୍ଦେ ମାଂ ଆନତଂ ମାମୁଞ୍ଚ ।। ୨୩ ।

## ପୟାର

ମାଳାରେ ପ୍ରତୀୟମାନ ଭୁଜଙ୍ଗ ପରାୟ
ଆପଣଙ୍କ ଠାରୁ ସତ୍ୟ ସ୍ୱରୂପ ଉଦୟ ।
ହୋଇଥିବ ଏହି ସି ଭୁବନ ନୁହେ ସତ୍ୟ
କପର— ନକଲ ସୁନା ବଜାରେ ବଢ଼ନ୍ତ ।
ହେଲେ ସୁଦ୍ଧା ନ ହୁଅଇ ଖାଣ୍ଟି ସ୍ୱର୍ଣ୍ଣବତ
ଏଥିପାଇଁ ଆପଣଙ୍କ ଯେ ପରମ ସତ୍ୟ ।
ପରମାନନ୍ଦ ସ୍ୱରୂପ ଅଦ୍ୱୈତ ସୁନ୍ଦର
ପଦ ବନ୍ଦ୍ୟମାନ ସେହି ପଦକୁ ସତ୍ୱର ।
ଆନନ୍ଦରେ ହେ ଇନ୍ଦିରା ବନ୍ଦିତ ଶ୍ରୀହରେ
ବନ୍ଦନା ମୁଁ କରୁଅଛୁ ନମ୍ରଗାମୀ ମୋରେ
ଛଡ଼ାଇ ଦିଅନ୍ତୁ ବେଗ ଆହେ ପ୍ରାଣଧନ
ଏତକ ମୁଁ ମାଗୁଥାଇ ମାଗୁନାହିଁ ଆନ । । ୨୩ ।

ଶ୍ଳୋକ—(୨୪)

ମୁକୁଟ କୁଣ୍ଡଳ କଙ୍କଣ କିଙ୍କିଣୀ
ପରିଣତଂ କନକଂ ପରମାର୍ଥତଃ
ମହଦହଂ କୃତି ସ୍ୱ ପ୍ରମୁଖଂ ତଥା
ନରହରେ ନପରଂ ପରମାର୍ଥତଃ । । ୨୪ ।

ଅନ୍ୱୟ—କନକଃ ମୁକୁଟ କୁଣ୍ଡଳ କଂକଣ କିଙ୍କିଣୀ ପରିଣତଂ ପରମାର୍ଥତଃ । ହେ ନରହରେ ତଥା ପରମାର୍ଥତଃ ମହ ଦହ ଂ କୃତ ସ୍ୱ ପ୍ରମୁଖଂ ନପରଂ । । ୨୪ ।

## ପୟାର

ସୁନା ମୁକୁଟ କୁଣ୍ଡଳ କଙ୍କଣ କିଙ୍କିଣୀ
କଷଟରେ ପରିଣତ ବହୁ ନାମେ ପୁଣି
ବସ୍ତୁ ତ ସୁନା ଅଟଇ ଏହି ପ୍ରକାରରେ

ହେ ନୃସିଂହ ମହଃତତ୍ତ୍ୱ ଅହଂକାର ଠାରେ
ଆକାଶ ବାୟୁ ଆଦ ରୂପରେ ଉପଲବ୍‌ଧ
ହୋଇଥିବା ଏହ ପୂର୍ଣ୍ଣ ଜଗତ ପ୍ରସିଦ୍ଧ ।
ଆପଣଙ୍କ ଭିନ୍ନ ଅନ୍ୟ କିଛି ନୁହେଁ ସାର
ତେଣୁ ଆପଣଙ୍କୁ ମୋର ଶତ ନମସ୍କାର । । ୨୪ ।

ଶ୍ଳୋକ—(୨୫)

ନୃତ୍ୟନ୍ତି ତବ ବୀକ୍ଷଣାଙ୍ଗଣ ଗତା
କାଳ ସ୍ୱଭାବା ଦୟଃ
ଭାବାନ୍ ସତ୍ତ୍ୱ ରଜ ସ୍ତମୋ ଗୁଣ ମାୟା
ନୁନ୍ ମୀନୟନ୍ତି ବହୁନ୍
ମାମାଦ୍ୟମ୍ୟ ପଦା ଶିରସ୍ୟତ ଉରଂ
ସନ୍ ମର୍ଦ୍ଦୟନ୍ ତ୍ୟାତୁରଂ
ମାୟାତେ ଶରଣଂ ବାତୋଽସ୍ମି ନୃହରେ
ତ୍ୱାମେବ ତାଂ ବାରୟ । । ୨୫ ।

ଅନ୍ୱୟ—ନୃହରେ ତେମାୟା ତବ ବୀକ୍ଷଣାଙ୍ଗଣ ଗତା ନୃତ୍ୟନ୍ତି । କାଳ ସ୍ୱଭାବା ଦୟଃ ଭାବାନ୍ ସତ୍ତ୍ୱ ରଜ ତମଃ ଗୁଣ ମୟାନ୍ ଭନ୍ ମୀନୟନ୍ତି । ବହୁନ ପଦା ମମ ଶିରସି ଅତ ଉରଂ ଆଦ୍ୟମ୍ୟ ସମର୍ଦ୍ଦୟନ୍ ଅସ୍ମିନ୍ ଆତୁରଂ ଶରଣଂ ଗତଃ ତାଂ ଏବ ବାରୟଃ । । ୨୫ ।

ପୟାର

ପ୍ରଭୋ ଆପଣଙ୍କର ଦୃଷ୍ଟି ପଥନରୁ ଏହ
ମାୟା ଆସି ହବା ହସି ନୃତ୍ୟ କରୁଥାଇ
କାଳ ସ୍ୱଭାବରୁ ସତ୍ତ୍ୱ ରଜ ତମ ଆଦ
ଅନେକାନେକ ଗୁଣରେ ଭାବ ଗୁଣେ ଭେଦ ।
ପ୍ରଦର୍ଶିତ ହେଉଅଛି ଏହା ସଙ୍ଗତରେ
ମୋ ମୁଣ୍ଡରେ ଆରୋହନ କର ନରହରେ ।

ମୋ ଦୁଃଖକୁ ବଢାଉଛି ସେହି ବିଶେଷରେ
(ହେ ନୃସିଂହ) ଶରଣାଗତ ମୁଁ ଆପଣଙ୍କ ଶ୍ରୀ ପଦରେ
ଆପଣ ଏହି ମାୟାକୁ ବିନାଶ କରନ୍ତୁ
ଜଞ୍ଜାଳ ମଧ୍ୟରୁ ମୋତେ ଉଦ୍ଧାର କରନ୍ତୁ ।।୨୫।

ଶ୍ଳୋକ—(୨୬)

ଦମ୍ଭନ୍ୟାସ ମିଷେଣ ବଞ୍ଚିତ ଜନଂ
ଭୋଗୈକ ଚିନ୍ତାତୁରଂ
ସନମୂଢ୍ୟନ୍ତ ମହର୍ନିଶଂ ବିରଚିତୋ
ଦ୍ୟୋଗ କ୍ଲେଶୈ ରାକୁଳମ୍
ଆଜ୍ଞା ଲଂଘିନ ମଜ୍ଞ ମଜ୍ଞ ଜନତା
ସନ୍ ମାନନା ସନ୍ ମଦଂ
ଦୀନାନାଥ ଦୟା ନିଧାନ ପରମା—
ନନ୍ଦ ପ୍ରଭୋ ପାହିମାମ୍ ।।୨୬।

ଅନ୍ୱୟ—ପ୍ରଭୋ ଦମ୍ଭ ନ୍ୟାସ ମିଷେଣ ଜନଂ ବଞ୍ଚିତ । ଏକ ଭୋଗୈଃ ଚିନ୍ତାତୁରଂ । ଅହର୍ନିଶଂ ଉଦ୍ୟୋଗ କ୍ଲେଶୈଃ ବିରଚିତଂ ଆକୁଳଂ ସନ୍ ମୂଢ୍ୟନ୍ତଂ ଆଜ୍ଞା ଲଂଘିନଂ ଅଜ୍ଞଂ ଅଜ୍ଞଂ ଜନତା ସନ୍ ମାନନା ସନ୍ ମଦଂ ଦୀନାନାଥ ଦୟା ନିଧାନ ପରମାନନ୍ଦ ମାଂ ପାହି ।୨୬।

ପଦ୍ୟାର

ଆହେ ପ୍ରଭୁ ଦମ୍ଭ ପୂର୍ଣ୍ଣ ସନ୍ୟାସୀ ମୁଁ ହୋଇ
ଜନଗଣେ ଅତି ପ୍ରବଞ୍ଚନା କରୁଥାଇ ।
କମ୍ପା ଠକୁଅଛି ଏକ ଭୋଗର ଚିନ୍ତାରେ
ଆତୁର ମୁଁ ଦିନରାତି ବହୁ କଷଣରେ ।
ବହୁଳ ଉଦ୍ୟୋଗ ପାଇଁ ସର୍ବଦା ବ୍ୟାକୁଳ
ତଥା ମୋହଗ୍ରସ୍ତ ଆପଣଙ୍କ ଆଜ୍ଞା ଠୂଳ ।
ରେ ଲଂଘନ କରୁଅଛି ଅଶେଷ୍ଟ ମୁଁ ଅଜ୍ଞାନୀ
ତଥା ଅଜ୍ଞାନୀ ମାନଙ୍କ ମୂର୍ଖ ସନ୍ମାନୀ ।

ମୁହିଁ ସନ୍ତୁ ଏହ୍ନ ଗବ କରି ବସିଅଛୁ
ଆତ୍ହେ ଘିନାନାଥ ଦସ୍ମାନିଧାନ କହୁଛୁ ।
ହେ ପରମାନନ୍ଦ ପ୍ରଭୁ ମୋତେ ରକ୍ଷାକର
ମୋର ଦୁଃଖ କଥା ସବୁ କରିଲ ଗୋଚର । । ୨୬ ।

ଶ୍ଳୋକ—(୨୭).

ଅବଗମଂ ତବମେ ହରି ମାଧବ
ସ୍ଫୁରତ ଯନ୍ତ୍ର ସୁଖୀ ସୁଖ ସଙ୍ଗମଃ
ଶ୍ରବଣ ବର୍ଣ୍ଣନ ଭାବମଥାପିବା
ନବ୍ଧ ଭବାମି ଯଥାବଧି କଙ୍କରଃ । । ୨୭ ।

ଅନ୍ୱୟ— ମାଧବ ! ମେ ତବ ହରି ଅବଗମଂ ଯତ୍ ସୁଖଂ ଅସୁଖ ସଙ୍ଗମଃ ନସ୍ଫୁରତ । ଅଥଂ ବା ଶ୍ରବଣ ବର୍ଣ୍ଣନ ଭାବଂ ଅପିନ୍ଧ । ଯଥା ବଧି କଙ୍କରଂ ନ ଭବାମି । । ୨୭ ।

ପୟାର

ହେ ମାଧବ ଆପଣଙ୍କ ସ୍ୱରୂପକୁ ମୋତେ
କରନ୍ତୁ ଯେ ଅନୁଭବ ଯେଉଁଥିରେ ସତେ ।
ପୁଣି ଦୁଃଖ ସୁଖ ସଂଯୋଗର ଅନୁଭବ
ନହୁଅଇ ଅବା ମୋତେ ଆପଣ ସ୍ୱଭାବ
ଗୁଣକୁ ଶ୍ରବଣ ସଙ୍ଗେ ବର୍ଣ୍ଣନର ପ୍ରେମ
ହଅନ୍ତୁ କ ଯେଉଁଥିରେ ମୁହିଁ ଅବିରାମ
ବଧି ନିଷେଧର ଦାସ କେବେ ନହୋଇବ
ଅବିରତ ଶ୍ରୀ ଚରଣେ ଦାସ ହୋଇଥିବ । । ୨୭ ।

ଶ୍ଳୋକ—(୨୮)

ଦ୍ୟୁପତୟୋ ବବୁରନ୍ତ ମନନ୍ତତେ
ନବ୍ଧ ଭବାନ୍ତ ଗିରଃ ଶ୍ରୁତ ମୌକୟଃ

ଭ୍ରାମ୍ୟି ଫଳନ୍ତି ଯତ୍ରୋ ନମଃ ଇତ୍ୟତୋ
ଜୟ ଜୟେତି ଭଜେ ତର୍ବ ତତ୍ ପଦମ୍ ।। ୨୮ ।

ଅନ୍ୱୟ—ହେ ଅନନ୍ତ ! ବ୍ରହ୍ମାଦୟଃ ତେ ଅନ୍ତଂ ନବଦ୍ଧୁଃ ଭବାନ୍ ନ । ଶ୍ରୁତି ମୌଳୟଃ ତବ ଜୟ ଜୟ ଇତ୍ୟୀ ନମଃ ଫଳନ୍ତି ତତଃ ତତ୍ ପଦଂ ଭଜେ ।। ୨୮ ।

ପୟାର

ହେ ଅନନ୍ତ ବ୍ରହ୍ମା ଆଦି ଯେତେ ଦେବଗଣ
ନଜାଣନ୍ତି ଆପଣଙ୍କ ଅନ୍ତ ଯେ ପ୍ରମାଣ
ନଜାଣନ୍ତି ଯେ ଆପଣ ଅନ୍ୟ କେ ଭଜନ
ହୋଇବ ନାହିଁ ଜଗତେ ଏପରି ଯେ ଜନ
ଆଉ ବେଦ ମୁକୁଟ ମଣି ଉପନିଷଦ
ଜାଣେକ ଆପଣ ସର୍ବ କାଳରେ ଅନନ୍ତ
ଆପଣଙ୍କୁ ନମୋ ନମଃ ଜୟ ଜୟ କହି
ଚରିତାର୍ଥ ହୋଇଅଛି ସେହି ବେଦତ୍ରୟୀ
ଏଣୁ ମୁହିଁ ଆପଣଙ୍କୁ ନମୋ ନମଃ କହି
ଆପଣଙ୍କ ଜୟ ହେଉ ଜୟ ହେଉ ଗାଇ ।
ଆପଣଙ୍କ ପାଦ କମଳରେ ଉପାସନା
କରୁଅଛି ସର୍ବ ତେଜ ଏ ମୋର ଭାବନା ।। ୨୮ ।



# ଉପସଂହାର

ପରିଶେଷରେ ବର୍ତ୍ତମାନ ବିଶେଷତଃ ଏ ଦେଶୀୟ ସମାଜ ଭୋଗ ମାର୍ଗରେ ଧାବିତ ତ୍ୟାଗ ମାର୍ଗୀ ବୃନ୍ଦ ନିଃଶେଷ ହୋଇ ନାହାନ୍ତି, ଅଛନ୍ତି ଓ ସେମାନଙ୍କର ସଂଖ୍ୟା କମ୍ ନୁହେଁ । ଯୋଗୀ ଅରବିନ୍ଦଙ୍କ ଭାଷାରେ ସାଧୁ ସନ୍ଥ ଅବତାର ଭେଦରେ ଏ ଦେଶରେ ପ୍ରାଚୀନ ସନାତନ ଧର୍ମ ରକ୍ଷାକାରୀ ବହୁ ମହାପୁରୁଷ ମାନଙ୍କର ଜନ୍ମ ହୋଇଛି । ( ଗୀତାର ପ୍ରମାଣ ଅନୁସାରେ ଯଦା ଧର୍ମସ୍ୟ ଗ୍ଲାନି ର୍ଭବତି ତଦ ଆତ୍ମନଂ ଅହଂ ସୃଜେ) ସେହି ମହାପୁରୁଷ ମହାଯୋଗୀ ତ୍ୟାଗୀ ମାନଙ୍କ ଆଚରଣ ଓ ପ୍ରେରଣାରେ ପୁଣି ସମାଜ ସୁପଥକୁ ଆସେ । ସେମାନଙ୍କର ତିରୋଧାନ କିଛି କାଳ ପରେ ପୁଣି ସ୍ୱେଚ୍ଛାଚାର ବ୍ୟଭିଚାର ବଢ଼େ, ସମାଜ ଦିଗ୍‌ଦର୍ଶନ ହରାଏ, ଲୋକ ଶକ୍ତି ବିପଥଗାମୀ ହୁଏ, ନଷ୍ଟ ହୁଏ ଓ ଜୀବୋପକାର ପାଇଁ ଲାଗିପାରେ ନାହିଁ । ଶକ୍ତିକ୍ଷୟ ହେଲେ ଅଜ ସେ ପୁରୁଷରେ ଆସିପାରେ ନାହିଁ, କାଳ ଧ୍ୱଂସକାରୀ ପ୍ରଭାବରେ ସବୁ ଚାଲି ଯାଏ । ଏହାହିଁ ସୃଷ୍ଟିର ଚିରନ୍ତନ ନୀତି ବା ପରିବର୍ତ୍ତନର ରୂପ ବା ରୂପାନ୍ତର । ସୃଷ୍ଟିର ଉତ୍ପତ୍ତି ଓ ସ୍ଥିତି—ପରେ ବିଲୟ, ମାନବ ଜୀବନରେ ଯେପରି ବାଲ୍ୟ ଯୌବନ ଓ ବୃଦ୍ଧତ୍ୱ ସତ୍ୟର ଚିରନ୍ତନ ଜ୍ୟୋତି ଆବରଣରେ ଆଚ୍ଛାଦିତ ହେଲେ ପୁଣି ଧିଗ ଦ୍ରଷ୍ଟାଙ୍କର ଉତ୍ପତ୍ତି ହୁଏ ଓ ପ୍ରକୃତ ସତ୍ୟକୁ ବେଗରେ ଅନୁଗାମୀମାନେ ପରିଣତ କରିବାକୁ ଚେଷ୍ଟା କଲେ କିମ୍ବା କରିଲେ ତାହା ସମାଜରେ ହିତଫଳ ପରିବର୍ତ୍ତେ ଅହିତ କରାଏ । ମହାପୁରୁଷ ମାନଙ୍କ ଶିଷ୍ୟ ବା

ଅନୁଗାମୀମାନେ ଏଥିପାଇଁ ଦାୟୀ । ନିଜେ ଶୁଦ୍ଧ ଆଚରଣ ନକଲେ ଭଗବତ୍ ପ୍ରେମ ବା ଭଗବତ ହସ୍ତ କେଉଁଠୁ ଆସିବ ? ନିଜର ଦୁଷ୍ଚେଷ୍ଟା ଭୋଗ ଓ ଆଧିପତ୍ୟ ଅନ୍ଧ ଆସୁରୀ ପ୍ରବୃତ୍ତି ପ୍ରଚ୍ଛନ୍ନରେ ରଖି ଉପରେ ବାହ୍ୟାଡ଼ମ୍ବର ବ୍ୟସ୍ତରେ ଜନ ସମାଜକୁ ଦେଖାଇଲେ ପରିଣାମରେ ମୂଳ ଲକ୍ଷ୍ୟ ବା ସେହି ମହାପୁରୁଷ ମାନଙ୍କ ଉପଦେଶ ଉଭେଇଯାଏ ତା କଥାରେ ରହିଯାଏ । କେହି ତାହାର ଆଚରଣ କରନ୍ତି ନାହିଁ । ଆଚରଣ ନକଲେ ଉପଲବ୍ଧି କପରି ହେବ ? ଏପରି ଶତ ସହସ୍ର ଉପଦେଶ ହଜାର ହଜାର ପୁସ୍ତକରେ ଲିପିବଦ୍ଧ, ପଢ଼ୁଛି କିଏ ?

ସବୁ କାଳରେ ଭୋଗ ଓ ତ୍ୟାଗ, ଦୁଇ ପଥ ଥିଲା— ବର୍ତ୍ତମାନବି ଅଛି । ଯାହାକୁ ଯାହା ଭଲ ଲାଗିଲା ସେ ଆଚରଣ କଲା । ତ୍ୟାଗ ଓ ସନ୍ତୋଷ ବିନା ଆନନ୍ଦ କାହିଁ ? ଭୋଗର ସୀମା ନାହିଁ, କ୍ଳେଶ ଅନନ୍ତ, ସାମୟିକ ଆନନ୍ଦ ହେଉଛି ପରେ ଦୁଃଖ ଅନୁଚିନ୍ତା ଅଶେଷ ।

ତେଣୁ ସେହି ଯୋଗଜନ୍ମା ମହାପୁରୁଷ ମାନଙ୍କ ଧ୍ୱଜାଧାରୀ ବା ଅନୁଗତ ମାନେ ଏ ସ୍ଖଳନ ପାଇଁ ଦାୟୀ ଯଥା ଗାନ୍ଧିଜୀଙ୍କ ଆଚରଣ ବା ଯୋଗୀରାଜ ଅରବିନ୍ଦଙ୍କ ଆଚରଣ ।

ଏହି ଆଦର୍ଶ ପୁରୁଷମାନଙ୍କୁ ଆଗରେ ରଖିବା ଦେଖାଇ ନିଜର ଅନ୍ତର୍ନିହିତ ବାସନା ବିବିଧ ପ୍ରକାରରେ ଛଦ୍ମରେ ଚରିତାର୍ଥ କରିବା ଦ୍ୱାରା ସେହି ମହାତ୍ମା ମାନଙ୍କର କି ଉପଯୁକ୍ତ ସମ୍ମାନ ଏମାନେ ଦେଉଛନ୍ତି ତାହା ସେମାନଙ୍କୁ ଜଣା । ଫଳ ମଧ୍ୟ ପାଇପାରୁଛନ୍ତି । ଅଜ୍ଞ ଲୋକମାନଙ୍କୁ ଧନ ବଳରେ ସାମୟିକ ବଶ କରି ନିଜର ପ୍ରତିଷ୍ଠା ଦେଖାଉଛନ୍ତି ମାତ୍ର ତାହା ଚିରଦିନ ପାଇଁ ନୁହେଁ ।

ଏ ଯୁଗର ଭୋଗ ତୃଷ୍ଣା ଧନ ଓ କ୍ଷମତାତ୍ମକ ହେବା ପାଇଁ ଆଶାୟୀ ତରୁଣ ମାନଙ୍କୁ ଏହା ଭଲ ଲାଗିନପାରେ କିନ୍ତୁ ଦିନ ଆସିବ ବୟସ ପରିଣତ ବେଳେ ସେମାନେ ଖୋଜିବେ ।

ଲେଖକ ଙ୍କ ସାର ନିବୃତ୍ତି ପ୍ରଧାନ ସ୍ତବପ୍ରୋଧ ଅନୁବାଦ କରି ନିଗୂଢ଼ାର୍ଥ ପ୍ରତିପାଦନ କରିବା କଷ୍ଟ ସାଧନା ବା ଆଚରଣ ଏକାନ୍ତ ପ୍ରୟୋଜନ । ତେଣୁ ପାଠକ ମାନଙ୍କୁ ବିନମ୍ର ଅନୁରୋଧ, ସ୍ୱାମୀ ଶ୍ରୀଧରଙ୍କ ପ୍ରତିଭାକୁ ସମ୍ମାନ ଦେଇ ପଠନ କଲେ ଓ ଆଚରଣ କଲେ ଲେଖକର ଶ୍ରମ ସାର୍ଥକ ହେବ । ଭାଷା ଓ ଅନୁବାଦରେ ତ୍ରୁଟି ଥିଲେ ନିଜ ଜ୍ଞାନ ବଳରେ କ୍ଷମା କରି ପଠନ କରିବେ । ॥ ଇତି ॥

ବିନୀତ ଲେଖକ
୫ । ୯ । ୧୯୯୧

## ପ୍ରକାଶିତ ପୁସ୍ତକ

୧ । ଶ୍ରୀରାମ କଥା ଶତକମ୍

୨ । ବରଞ୍ଜି ନାରପୂଜ (୧ମ ଭାଗ)

୩ । ଶକ୍ତି ରହସ୍ୟ ଶତକମ୍

୪ । ଦାନ୍ତା ଯୌତୁକ କେବେ ଉଠିବ

୫ । ଉଦ୍ଧବ ଓ ଉଦ୍ଧବାଳି ଚରିତ

୬ । (ଶ୍ରୀଧର ସ୍ୱାମୀଙ୍କ ସ୍ତବନା ବା ନୃସିଂହ ସ୍ତୁତି)

## ପ୍ରକାଶ ଅପେକ୍ଷାରେ

୭ । ସୂର୍ଯ୍ୟ ଶତକମ୍ (ଅନୁବାଦ ସହ)

୮ । ଗୁରୁ ନାନକ ଜୀବନ ଚରିତ

୯ । ସନ୍ଥ କବିର ଜୀବନ ଚରିତ

୧୦ । ଯୋଗୀ ଅରବିନ୍ଦ ଜୀବନ ଚରିତ

୧୧ । ବ୍ୟର୍ଥ ଅଭିଯାନ

୧୨ । ଯୁଗ ବାଣୀ

୧୩ । ଚଣ୍ଡି ପ୍ରତିଶୋଧ

୧୪ । ବିଶ୍ୱକର୍ମା କଣାଣ

୧୫ । ସାହାଡ଼ା ଶୁଖୀ ମହିମା

୧୬ । ଉଦ୍ଧବାଳୀ ସ୍ତୁତି

ଶତାବ୍ଦୀ ପ୍ରେସ୍, ନୂଆପଲ୍ଲୀ, ଭୁବନେଶ୍ୱରଙ୍କ ଦ୍ୱାରା ମୁଦ୍ରିତ

ମୂଲ୍ୟ ୪-୦୦